ବିଶ୍ୱସାହିତ୍ୟ ଗ୍ରନ୍ଥମାଳା

# ଗ୍ରୀମ୍‌ସଙ୍କ ପରୀ-କାହାଣୀ

୧



ଗ୍ରନ୍ଥମନ୍ଦିର

বিশ্বসাহিত্য গ্রন্থমালা

# ଗ୍ରୀମ୍‌ସଙ୍କ ପରୀ-କାହାଣୀ

[ Grimms' Fairy Tales ]

[ ପ୍ରଥମ ଖଣ୍ଡ ]

ଅନୁବାଦ :

ଶ୍ରୀ ବଂଶୀଧର ଦାଶ

ଗ୍ରନ୍ଥମନ୍ଦିର

ପ୍ରକାଶକ : ମନୋଜ କୁମାର ମହାପାତ୍ର
**ଗ୍ରନ୍ଥମନ୍ଦିର,** ବିନୋଦବିହାରୀ, କଟକ-୨

ମୁଦ୍ରକ : **ଅପ୍ରତିମା (ଅଫସେଟ୍) ପ୍ରିଣ୍ଟସ୍,**
ସୂତାହାଟ, କଟକ-୧

ପ୍ରଥମ ମୁଦ୍ରଣ : ୧୯୮୦
ପରିମାର୍ଜିତ ମୁଦ୍ରଣ : ୧୯୯୭

ମୂଲ୍ୟ : ଟ. ୨୦/-

# ସୂଚୀପତ୍ର



—

# ଅତି ଲୋଭରେ ସର୍ବନାଶ

ସମୁଦ୍ରକୂଳରେ କେଉଟ ପଡ଼ା। ଗାଆଁମୁଣ୍ଡରେ ଗୋଟିଏ ଭଙ୍ଗା କୁଡ଼ିଆରେ କେଉଟ କେଉଟୁଣୀ ଦୁଇପ୍ରାଣୀ ଥାଆନ୍ତି। ସେମାନେ ବଡ଼ ଦୁଃଖକଷ୍ଟରେ କାଳକାଟୁଥା'ନ୍ତି। କେଉଟ ଦିନଯାକ ଜାଲ ପକାଇ ଉପରବେଳାକୁ ଯେଉଁ ଦି'ଟା ମାଛ ଧରିଆଣେ, କେଉଟୁଣୀ ସେତକ ବିକି ଖାଇବାଜିନିଷ କିଣିଆଣେ। ମାଛ ମିଳିଲା ଦିନ ଖାଆନ୍ତି; ନ ମିଳିଲା ଦିନ ଉପାସ।

ଦିନକର କଥା। କେଉଟ କେତେ ଜାଲ ପକାଇଲା, ମୋଟେ ମାଛ ପଡ଼ିଲାନାହିଁ। ସେପଟେ ସମୁଦ୍ରରେ ଏକ ଝଡ଼ ଉଠିଲା। ଶେଷକୁ ହାଲିଆ ହୋଇ କହିଲା, ''ଏହି ଶେଷ ଝେପାକ ପକାଇବି; ମାଛ ପଡ଼ିଲା ତ ପଡ଼ିଲା, ନ ପଡ଼ିଲେ ନାହିଁ।'' ଏପରି କହି ସେ ଜାଲ ପକାଇ ଟାଣିଆଣିବାବେଳକୁ ଦେଖିଲା ଜାଲଟା ଖୁବ୍ ଭାରିଲାଗୁଛି। ଡଙ୍ଗାଉପରକୁ ଜାଲ ଟେକିଆଣି ଦେଖେ ତ ସେ ଭିତରେ ଏକ ବିଚିତ୍ର ମାଛ ପଡ଼ିଛି। କେଉଟ ତାକୁ ଧରୁ ଧରୁ ସେ କହିଲା, ''କେଉଟ ଭାଇ, କେଉଟ ଭାଇ, ମତେ ମାରନା; ମତେ ଛାଡ଼ିଦେ।''

କେଉଟ ଅବାକ୍ ହୋଇ କହିଲା, ''ଏଁ! ତୁ ମାଛ ହୋଇ କ'ଣ କଥା କହୁଛୁ!!''

ମାଛ କହିଲା, ''ତୁ ଜାଣିନୁ ରେ ଭାଇ, ମୁଁ ସତରେ ମାଛ ନୁହେଁ; ମୁଁ ସ୍ୱର୍ଗର ମାଛରଜାଙ୍କ ପୁଅ। ଦେବତାଙ୍କ ଅଭିଶାପରୁ ଏ ସମୁଦ୍ରପାଣିରେ ରହିଛି। ମତେ ଛାଡ଼ିଦେ — ତୋର ମଙ୍ଗଳ ହେବ।''

କେଉଟ କହିଲା, ''ଆରେ, କେଉଟ ବାପୁଡ଼ାର ମଙ୍ଗଳ କେତେ, ଅମଙ୍ଗଳ କେତେ! ତୁ ଯେ ପାରି ସେ ହୁଅ, ତୋ ପରା କଥାକୁହା ମାଛକୁ ମୁଁ ମାରିବି ନାହିଁ।'' ଏପରି କହି ସେ ମାଛଟିକୁ ପାଣିରେ ଛାଡ଼ିଦେଲା। ମାଛ ଗଭୀରପାଣିରେ ପଶି ଯାଉ ଯାଉ କହିଲା, ''କେଉଟ ଭାଇ, ତୁ ମତେ ପ୍ରାଣଦେଲୁ। ତୋର ଯଦି କିଛି ଲୋଡ଼ାପଡ଼େ ତେବେ ଅକାଳେ-ସକାଳେ ଆସି ଡାକିଲେ ମୁଁ ତୋର ସାହା ହେବି।''

କେଉଟ କହିଲା, ''ଭଲକଥା, ହେଲେ ଏବେ ତ ସମୁଦ୍ରରେ ଝଡ଼ ଉଠାଇଲାଣି; ମୁଁ କିପରି ସଅଳ ସଅଳ ଘରକୁ ପଳାଏ।''

ମାଛ କହିଲା, ''ହଉ, ତୋପାଇଁ ସମୁଦ୍ରଝଡ଼ ଅଟକିଯିବ। ତୁ ଘରେ ପହଞ୍ଚିବାପରେ ଯାହା ହେବାର ହେବ।''

ସତକୁ ସତ ସମୁଦ୍ରଝଡ଼ କେଉଁଆଡ଼େ ଉଭେଇଗଲା। କେଉଟ ମାଛକୁ ପ୍ରଶଂସା କରି ଘରକୁ ପଳାଇଆସିଲା। ତାର ଖାଲି ଖାଳେଇ ଦେଖି କେଉଟୁଣୀ କହିଲା, "ହଇ ହେ! ଦିନଯାକ ଖଟି ଖଟି ଖାଲି ଖାଳେଇ ଧରି ଆସିଛ? କିଛି ମାଛ ପଡ଼ିଲାନାହିଁ?"

କେଉଟ କହିଲା, "ଆଲୋ, ଆଜି ଭାଗ୍ୟରେ କିଛି ନାହିଁ। ଶେଷ କ୍ଷେପାରେ ବଡ଼ମାଛଟାଏ ପଡ଼ିଥିଲା ଯେ, ସେ ଗୋଟିଏ କଥାକୁହା ମାଛ!"

—"କଥାକୁହା ମାଛ! କ'ଣ କହୁଛ ତୁମେ!"

—"ହଁ ପରା"! କହିଲା, 'ଭାଇ ମୁଁ ସରଗର ମାଛରଜାଙ୍କ ପୁଅ। କାହା ଅଭିଶାପରୁ ସମୁଦ୍ରପାଣିରେ ରହିଛି। ମତେ ଛାଡ଼ିଦେ।' ମୁଁ ଛାଡ଼ିଦେଲି। ପୁଣି କହିଲା, 'ଅକାଳେ-ସକାଳେ ଡାକିଲେ ଆସି ସାହା ହେବ।' ମାଛଟାଏ— କି ସାହା ହେବ? ଯାହାହେଉ ତା'ରି କଥାରୁ କି କଣ ଝଡ଼ଟା ଥମିଗଲା ଯେ, ମୁଁ ଆପଦବିପଦ ନପଡ଼ୁଣୁ ଘରକୁ ପଳାଇଆସିଲି। ଦେଖୁନୁ, କିପରି ଝଡ଼ ମାଡ଼ିଆସିଲାଣି।"

କେଉଟୁଣୀ କହିଲା, "ହେଲା ଯେ, ତୁମେ ତାକୁ କିଛି ନମାଗି ଛାଡ଼ିଦେଲ କିପରି ମ?"

—"କହିଲି ପରା, ତାକୁ କହିବାରୁ ସେ ଝଡ଼ଟା ଥମାଇଦେଲା— ଆଉ କଣ ମାଗନ୍ତି?"

କେଉଟୁଣୀ କହିଲା, "ସେ ସରଗମାଛ। ତାର କେତେ ଶକ୍ତି। ସେ ଯାହା କହିବ, ତା' ହବ। ତମେ ଏତିକି ବୁଝିପାରିଲ ନାହିଁ? —ଦେଖୁଛ, ଏ ଭଙ୍ଗା କୁଡ଼ିଆଖଣ୍ଡିଏ ଯେ ବର୍ଷାପାଣି ଆସିଲେ ଏ ଭିତରେ ମୁଣ୍ଡ ଗୁଞ୍ଜିବାକୁ ଜାଗା ନାହିଁ— ଭଲ ଘରଖଣ୍ଡିଏ ମାଗିନଥାନ୍ତ?"

କେଉଟ କହିଲା, "ସେ ବିଚରା ତ ଅଭିଶାପ ପାଇ ପାଣିରେ ପଡ଼ିଛି— ତାକୁ ଆଉ ଘର ମାଗିବି କଣ!"

—"ତମର ତ ଏ ବୋକାମି ଗଲା ନାହିଁ। ନିଜ ବାହୁରେ ତ ବଳ ନାହିଁ ଯେ ଘରଖଣ୍ଡିଏ କରିବ ନାହିଁ; ଲାଗି ଆଣିବ ନାହିଁ କି ମାଗି ଆଣିବ ନାହିଁ। ହବ କିମିତି— ନାହିଁ, ତୁମେ ଏଇଲାଗେ ଯାଅ। ସେ ମାଛକୁ ଡାକି ଘରଖଣ୍ଡିଏ ମାଗ।"

ଏପରି ମାଗିବାକୁ କେଉଟର ମୋଟେ ଇଚ୍ଛା ନଥାଏ; କିନ୍ତୁ ସ୍ତ୍ରୀ ସହିତ କଳି କରିବାକୁ ବି ତାର ସାହସ ନଥାଏ। ତେଣୁ ସେ ବାଧହୋଇ ସମୁଦ୍ରକୂଳକୁ ଚାଲିଲା। ସେତେବେଳକୁ ଝଡ଼ ଆସୁଥିବାରୁ ସମୁଦ୍ର-ପାଣିରେ ବଡ଼ବଡ଼ ଲହଡ଼ି ଉଠୁଥାଏ। କେଉଟ ସମୁଦ୍ରକୂଳରେ ଠିଆହୋଇ ଡାକ ପକାଇଲା—

"ସତ୍ୟ ମାଛ ରେ ରଖ ତୋ କଥା,
ଶୁଣିଯା ଥରେ ମୋ ମନକଥା।"

କେଉଟ ପାଟିରୁ ଏତକ ବାହାରିଛି କି ନାହିଁ, ସେ ଅପୂର୍ବ ମାଛ ଆସି କୂଳରେ ଲାଗିଗଲା; ପାଟିକରି ଡାକିଲା, "ହୋ, କେଉଟ ଭାଇ! ତୁମର କି ମାଗୁଣି ଅଛି, ମାଗ।" କେଉଟ କହିଲା–

"ମାଗିବାକୁ ମୋର କି ଅଛି ଆଉ,
ସହି ନ ପାରେ ମୋ ଭାଗିଯା ଦାଉ।
ଭଙ୍ଗା କୁଡ଼ିଆରେ ତା ମନ ନାହିଁ;
ଭଲ ଘରଖଣ୍ଡେ ଦିଅ ରେ ଭାଇ!"

ଏ କଥା ଶୁଣି ମାଛ କହିଲା, "ନିଶ୍ଚୟ, ନିଶ୍ଚୟ। ଏଥର ତୋର ଭଲ ଘର ହୋଇଯିବ। ତୁ ଯାଆ।" ଏତିକି କହି ମାଛ ପାଣିରେ ପଶିଗଲା ଏବଂ କେଉଟ ଘରକୁ ଫେରିଲା। କିନ୍ତୁ ସେ ଗାଆଁମୁଣ୍ଡକୁ ଆସି ଦେଖେ ତ, ଆଉ ତା ଘରଟା ଦେଖାଯାଉନାହିଁ। 'କୁଡ଼ିଆ ଘରଟା କୁଆଡ଼େ ଗଲା' ବୋଲି ସେ ଖୋଜିହେଉଛି; ସେପଟୁ ତା' ଭାର୍ଯ୍ୟାର ପାଟି ଶୁଭିଲା, "ଆହେ, ତୁମେ ସେ ପଟେ କଣ ଖୋଜିହେଉଛ; ହେଇଟି ପରା ଆମ ଘର।" ବୁଢ଼ା ଚାହିଁ ଦେଖେ ତ, କି ସୁନ୍ଦର ଖପର ଘରଟିଏ ହୋଇଛି। ତା ଚାରିପଟେ ଛୋଟ ପାଚେରିଟିଏ। ଆଗରେ ଫୁଲ ବଗିଚା। ପଛରେ ଫଳ ବଗିଚା। ଦାଣ୍ଡପିଣ୍ଡାରେ କେଉଟୁଣୀ ବସି ହସୁଛି। ପାଖରେ ବତକ କୁକୁଡ଼ା ହେଇ ପଲେ ଚରୁଛନ୍ତି। ପାଖ ଗୁହାଳରେ ଗାଈଟିଏ ବନ୍ଧାହୋଇ ହମ୍ବାରଡ଼ି ଦେଉଛି। କେଉଟ କିଛି ବୁଝି ନପାରି ଆଖି ମଳିପକାଇଲା। ସେ ବଲବଲ କରି ଚାହିଁଛି। କେଉଟୁଣୀ କହିଲା, "ଆହେ, ଚାହୁଁଚ କ'ଣ? ଝଡ଼ ବର୍ଷା ଉଠାଇଲାଣି। ଝଅଟ ଘର ଭିତରକୁ ପଳାଇଆସ। ଏଇଟା ପରା ଆମ ଘର।"

କେଉଟ ପଚାରିଲା, "ହଇ ଲୋ, ଆମ କୁଡ଼ିଆଟି କୁଆଡ଼େ ଗଲା? ଏ ଘର କାହୁଁ ଅଇଲା?"

କେଉଟୁଣୀ କହିଲା, "ସେ ସରଗ ମାଛ ତୁମକୁ ଠିକ୍ କହିଥିଲା। ତୁମେ ଯାଇ ତାକୁ ଭଲ ଘରଖଣ୍ଡିଏ ମାଗିଲଟି?"

–"ହଁ, ସେ ପରା କହିଲା; ଆମ କୁଡ଼ିଆଟି ଭଲ ଘର ହୋଇଯିବ।"

–"ଠିକ୍ ସେଇଆ ହେଲା। ମୁଁ ପରା ଚାହିଁଛି, କୁଡ଼ିଆଟି କୁଆଡ଼େ ଉଭାନ ହୋଇ ତା ଜାଗାରେ ଏ ଘରଟି ହୋଇଗଲା। ଏଥର ଆମର ଚିନ୍ତା ନାହିଁ। ଦେଖୁନା, ବତକ, କୁକୁଡ଼ା ଅଣ୍ଡା ଦେଉଛନ୍ତି ଯେ ଦିନକୁ ପୁଞ୍ଜା ପୁଞ୍ଜା। ଗାଈଟିଏ ହେଲାଣି ଯେ ଦୁଧ-ଦହି ଟିକିଏ ମିଳିବ। ବାରିରେ ତ ସୁନ୍ଦର ଫଳଗଛ ହୋଇଛି।

ଶୋଇବା ଘର, ଖାଇବା ଘର, ରୋଷେଇ ଘର ହୋଇ ଘର ଭିତରେ କେତେ ବଖରା ହୋଇଛି, ଦେଖିଲଣି ? ଭାରି ଭଲ ହୋଇଛି। ଏଥିକି ତୁମେ କ'ଣ କହୁଥିଲ ନା, ଯାଇ ମାଗିବ ନାହିଁ।''

ଘର ଭିତର ଦେଖିସାରି କେଉଟ କହିଲା, ''ସତରେ ବଡ଼ ସୁନ୍ଦର ହୋଇଛି। ଏଥର ତୋ ମନ ଖୁସି ହୋଇଗଲା, ନା ଲୋ ?''

କେଉଟୁଣୀ କହିଲା, ''ମଲା, ଏତକ ଜଗିରଖି ଚଳେଇଲେ କ'ଣ ଇଏ ବଢ଼ିବ ନାହିଁ ?''

ଯାହାହେଉ, କେଉଟ କେଉଟୁଣୀ ଏଥର ଆରାମରେ ଦିନ କାଟିଲେ। କିନ୍ତୁ ଦଶ-ପନ୍ଦର ଦିନ ଯିବା ପରେ କେଉଟୁଣୀ କହିଲା, ''ବାଡ଼ିଅଗଣାଟା ଆଉ ଟିକିଏ ବଡ଼ ହୋଇଥିଲେ ସିନା ହୁଅନ୍ତା— ଏଡ଼ିକି ଟିକିଏ ଅଗଣା— ଏଥିରେ ଜମା ଚଳିହେଉନାହିଁ।''

କେଉଟ କହିଲା, ''ଆଲୋ, ଆମ ଭଙ୍ଗା କୁଡ଼ିଆଠାରୁ କ'ଣ ଭଲ ହୋଇନାହିଁ ?''

କେଉଟୁଣୀ କହିଲା, ''ରଖିଥାଅ ମ ତୁମ ଭଲ। ଜମିଦାରଙ୍କ ଘର ଦେଖୁଛଟି ? କି ସୁନ୍ଦର ନ ହୋଇଛି। ପଥର କାନ୍ଥ, ପାଚେରି, କେଡ଼େ ବଡ଼ ଅଗଣା, କିମିତି ଛାତ, କେତେ ଗାଡ଼ି-ଘୋଡ଼ା— ତା ଆଗରେ ଏ ଘର କେତେ ଯେ !''

କେଉଟ କହିଲା, ''ଜମିଦାର ଆଉ ଆମେ ! ଆମେ କିମିତି ତାଙ୍କ ସଙ୍ଗେ ସମାନ ହୋଇଯିବା ?''

ଦିହେଁ ଏପରି କଥା ହେଉଛନ୍ତି, ଏ ସମୟରେ ଜମିଦାର ଘର ପିଆଦା ଆସି ଦୁଆରେ ଡାକ ପକାଇଲା— ''ଆହେ, ଘରେ ଅଛ ?'' କେଉଟ କେଉଟୁଣୀ ଦୁଆରମୁହଁକୁ ଦୌଡ଼ିଆସିଲେ। ପିଆଦା କହିଲା, ''ଆହେ, ଘର-ବାଡ଼ି କରି ତ ରହିଲ; ଖଜଣାଗଣ୍ଡାକ ଦେଇଦେଉନା କାହିଁକି ?''

କେଉଟୁଣୀ ଚେହେଁକିଉଠିଲା, ''କି ଖଜଣା ??''

ପିଆଦା କହିଲା, ''ଯେ ଲୋକ ଘର-ବାଡ଼ି କରି ରହିବ, ସେ ଜମିଦାରଙ୍କୁ ଖଜଣା ଦେବ— ଏତକ ଜାଣିନାହଁ ? ଖଜଣା ଟଙ୍କା କାଲି ସକାଳେ ନେଇ ଦେଇଆସ।'' ଏତକ କହି ପିଆଦା ଚାଲିଗଲା। କିନ୍ତୁ ସେ ଚାଲି ଯାଉ ଯାଉ କେଉଟୁଣୀ କେଉଟକୁ କହିଲା, ''ହେଇଟି, ତମେ ଆଉ ଡେରି ନ କରି ଶୀଘ୍ର ସମୁଦ୍ରକୂଳକୁ ଯାଅ।'' କେଉଟ କହିଲା, ''ଆଲୋ, ଖଜଣା ଟଙ୍କା କେଉଁଠୁ ଆଣିବା କହୁନୁ। ସମୁଦ୍ରକୂଳକୁ କଣ ପଠାଉଛୁ ?''

କେଉଟୁଣୀ କହିଲା, ''ଆହେ, ଆମେ ଆଉ ଖଜଣା ଦବାନାହିଁ। ତମେ ଯାଇ ସେ ମାଛକୁ କହ— ସେ ଆମକୁ ଏ ଅଞ୍ଚଳର ଜମିଦାର କରି ଦେଉ।''

କେଉଟ ଆଶ୍ଚର୍ଯ୍ୟ ହୋଇ କହିଲା, ''ହଇ ଲୋ, ଏ କି କଥା କହୁଛୁ

ତୁ!! ଆମକୁ ସେ ଜମିଦାର କରିଦେବ!! ଏଇଟା କ'ଣ ହବା କଥା ?

କେଉଟୁଣୀ କହିଲା, "ହେଇପାରିଲେ ସବୁ ହେବା କଥା। ଯେ ଆମ ଭଙ୍ଗା କୁଡ଼ିଆକୁ ଖପର ଘର କରିଦେଇପାରିଲା, ସେ ଆମକୁ ଜମିଦାର କରି ନ ଦବ କାହିଁକି ଯେ ! ତୁମେ ତ ସବୁ କଥାକୁ ଇମିତି ପଛାଉଛ; ହବ କିମିତି ?"

ସମୁଦ୍ରକୂଳକୁ ଯାଇ ମାଛକୁ ଏପରି ଏକ ମାଗୁଣି ମାଗିବାକୁ କେଉଟର ମୋଟେ ଇଚ୍ଛା ନ ଥାଏ। ସ୍ତ୍ରୀ ବସେଇ-ଉଠେଇ ନ ଦେବାରୁ ସେ ବିଚରା ବାଧହୋଇ ସମୁଦ୍ରକୂଳକୁ ଯାଇ ଡାକ ପକାଇଲା—

"ସତ୍ୟ ମାଛ ରେ ରଖ ତୋ କଥା,
ଶୁଣିଯା ଆସି ମୋ ମନ ବ୍ୟଥା।"

ତାର ଏ ଡାକ ଶୁଣି ସେ ସତ୍ୟ ମାଛ ଆସି କୂଳରେ ପହଞ୍ଚିଲା। ପଚାରିଲା, "ହୋ କେଉଟ ଭାଇ, ଭଲ ଘର ତ ପାଇଲ; ଆଉ କଣ ପୁଣି ମାଗୁଛ ?"

କେଉଟ କହିଲା— "ମାଗିବାକୁ ମୋର କି ଅଛି ଆଉ,
ସହି ନ ପାରେ ମୋ ଭାରିଯା ଦାଉ।
ଖପର ଘରରେ ତା ମନ ନାହିଁ,
ଜମିଦାର କରିଦିଅ ହେ ଭାଇ!"

ଏ କଥା ଶୁଣି ମାଛ କହିଲା, "ଏଇ କଥା ? ତୁମେ ଯାଇ ଘରେ ପହଞ୍ଚିବା ବେଳକୁ ମନସ୍କାମନା ପୂରା ହୋଇଯାଇଥିବ। ଆଉ କଣ ଦରକାର ହେଲେ, ପରେ ଦେଖିବା।"

କେଉଟ ମାଛଠାରୁ ବିଦାୟନେଇ ସାହିକୁ ଯାଇ ଦେଖେ ତ, ତା ଖପର ଘରଟା କାହିଁ ନାହିଁ। ତା ଜାଗାରେ ଏକ ମସ୍ତବଡ଼ ପଥର ଘର ଠିଆହୋଇଛି, ଘର ଆଗରେ ଦି'ଜଣ ପାଇକ ଠିଆହୋଇଥାନ୍ତି। କେଉଟ ବୁଢ଼ାକୁ ଦେଖୁ ଦେଖୁ ସେ ଦୁଇଜଣ ମୁଣ୍ଡ ନୁଆଇଁ ଓଳଗି ହେଲେ; କେଉଟ ବୁଢ଼ା ଆଶ୍ଚର୍ଯ୍ୟ ହୋଇ ଚାହିଁଛି। କେଉଟୁଣୀ ଘର ଭିତରୁ ଡାକ ପକାଇଲା, "ମଲା, ତମେ ଇମିତି ଚାହିଁଛ କଣ କି! ଆହେ, ଘର ଭିତରକୁ ଆସୁନା ?"

ଘଟଣା ଦେଖି କେଉଟ ତାଜୁବ। ସେ ଘର ଭିତରକୁ ଯାଇ ଦେଖେ ତ ସତରେ ସେ ଜମିଦାର ହୋଇଯାଇଛି। ସେ ଯାଇ ପାହାଚରେ ପାଦ ଦେଉ ଦେଉ ଚାକର ଆସି ଗୋଡ଼ ଧୋଇଦେଇ ଗାମୁଛାରେ ଗୋଡ଼ ପୋଛିଦେଲା। କଚିରି ଘରେ ଗୁମାସ୍ତାମାନେ ବସି ହିସାବ କରୁଥାନ୍ତି। ବୁଢ଼ାକୁ ଦେଖି ସମସ୍ତେ ଓଳଗି ହେଲେ। କେଉଟୁଣୀ ହସି ହସି କହିଲା, "ମୁଁ କ'ଣ କହୁଥିଲି ? ଆଉ କୋଉ ଜମିଦାର ଆସି ଆମକୁ ଖଜଣା ମାଗିବ, ମାଗୁ। ଘର ଭିତରକୁ ଆସି ଦେଖ, କେତେ ଦାସଦାସୀ, କିମିତି ଖଟ ପଲଙ୍କ, କିମିତି ଚଉକି ଟେବୁଲ

ସବୁ– ଦେଖିବ ଆସ।''

କେଉଟ ଦେଖିଲା ସତରେ ଘର ଚଟାଣରେ ଶଙ୍ଖ-ମଲମଲ ପଥର ପଡ଼ି ଘର ଝାଲି ଝଟକୁଛି। ଗଣ୍ଡା ଗଣ୍ଡା ଦାସଦାସୀ କାମ କରୁଛନ୍ତି। ରୋଷଘରେ ରାନ୍ଧୁଣୀମାନେ ଭଳିକି ଭଳି ଖାନା ତିଆରି କରୁଛନ୍ତି। ଶୋଇବାଘରେ ହାତୀ ଭଳି ପଲଙ୍କମାନ ପଡ଼ିଛି। ବାଗିଆଡ଼େ କି ସୁନ୍ଦର ବଗିଚ଼ା! କେତେ ଭଳି ଫୁଲ ଫଳ ଯେ ସେଥିରେ ଭରିହୋଇଛି ତାର କଳନା ନାହିଁ। ଶାଳରେ ଘୋଡ଼ା ବନ୍ଧା ହୋଇଛନ୍ତି। ଭଳିକି ଭଳି ଗାଡ଼ି, ପାଲିଙ୍କି। ଆଉ କୌଣସିଟାର ଅଭାବ ନାହିଁ। ସବୁ ଦେଖି କେଉଟ କେଉଟୁଣୀକୁ ପଚ଼ାରିଲା, ''ଏଥର ତା ହେଲେ ତୋ ମନସ୍କାମନା ପୂରା ହେଲା; ନାହିଁ ଲୋ ?''

କେଉଟୁଣୀ କହିଲା, ''ମଲା, ତୁମକୁ ଆଉ ଖୁସି ଲାଗୁଥିବ କି! ଯା'ହଉ, ଆଉ ଜମିଦାର ଘରୁ ତଲବ ଆସିବ ନାହିଁ।''

ସେଦିନ ରାତିରେ କେଉଟ କେଉଟୁଣୀ ଖୁବ୍ ଭୋଜିଭାତ କରି ଖାଇଲେ। ଖଟ ପଲଙ୍କରେ ଆରାମରେ ଶୋଇଲେ। ରାତି ପାହୁ ପାହୁ କେଉଟୁଣୀର ନିଦ ଆଗ ଭାଙ୍ଗିଗଲା। ସେ ପଲଙ୍କରେ ବସି ଝରକା ଦେଇ ବାହାରକୁ ଚାହିଁଦିଏ ତ ନଈ, ନାଳ, ପାହାଡ଼, ପର୍ବତ ହୋଇ ବହୁ ଦୂରଯାଏଁ ଦେଖାଯାଉଛି। ସେ ଭାବିଲା ଯେତେ ବାଟ ଯାଏଁ ଆଖି ପାଉଛି, ସେ ସବୁର ଯଦି ସେ ରାଜା ହୋଇଯାଆନ୍ତା, ତେବେ କେଡ଼େ ବଢ଼ିଆ ନ ହୁଅନ୍ତା! ମନକୁ ଏ ଭାବ ଆସୁ ଆସୁ ସେ କେଉଟକୁ ନିଦରୁ ଉଠାଇପକାଇଲା। କେଉଟ ଆଖି ମଳି ମଳି ଉଠି ବସୁ ବସୁ କେଉଟୁଣୀ କହିଲା, ''ଆହେ, ତମେ ଝଅଟ ସମୁଦ୍ରକୂଳକୁ ଗଲ!''

କେଉଟ ପଚ଼ାରିଲା, ''କାହିଁକି ଯିବି କହିଲୁ ? ଜମିଦାର ହେଲେ, କେତେ ଆଉ କେତେ ଆୟ ହେବ। ଆଉ ମାଛ ଧରିବାକୁ କାହିଁକି ସମୁଦ୍ରକୂଳକୁ ଯିବି ଯେ ?''

–''ଆହେ, ମାଛ ଧରିବାକୁ ନୁହେଁ ଯେ, ତୁମେ ସେ ସରଗ-ମାଛ ପାଖକୁ ଟିକିଏ ଯାଅ।''

–''କାହିଁକି ?''

–''କହିବ, ସେ ଆମକୁ ଏ ମୁଲକରେ ରାଜା କରିଦେଉ।''

କେଉଟ ପାଟିରେ ହାତଦେଇ କହିଲା, ''ଇଏ କି କଥା କହୁଛୁ ତୁ!! ହଇ ଲୋ, ଆମେ ରାଜା ହୋଇ କ'ଣ କରିବା ?''

–''ତମେ ଜାଣିନା; ମୁଲକରେ ରାଜା ହେଲେ, ଆମକୁ କେହି କିଛି କହିପାରିବେ ନାହିଁ। ଆମେ ତ ଆମେ– ଆମ ଉପରକୁ କାହିଁକି ଆଉ ଜଣେ ରହିବ ଯେ ? ତୁମେ ଶୀଘ୍ର ଯାଅ; ମାଛକୁ ସେତିକି ମାଗି ଆସିବ।''

କେଉଟ କହିଲା, "ଆଲୋ, କାଲି ସେ ଆମକୁ ଜମିଦାର କରିଦେଇଛି। ଆଜି ପୁଣି ରାଜା କରିଦିଅ ବୋଲି ମୁଁ କେଉଁ ମୁହଁରେ କହିବି ? ଏ ରାଜା ହେବା ନିଶା ଛାଡ଼ି ଦେ। ସତ କହୁଛି, ମୋର ରାଜା ହେବାକୁ ମୋଟେ ଇଚ୍ଛା ନାହିଁ।"

—"ଯାଅ ହେ, ତୁମେ ନ ହେବ ତ ନାହିଁ— ମୁଁ ରାଜା ହେବି। ତମେ ମୋ ନାଁ କହି ମାଛକୁ ଏ ବରଟି ମାଗିବ।" କହି କେଉଟୁଣୀ କେଉଟକୁ ଘରୁ ତଡ଼ିଲା। ଭାର୍ଯ୍ୟାଟା ସହିତ କେତେ ଝକଝକ ଲଗାଇବ ବୋଲି କେଉଟ ବାଧହୋଇ ସମୁଦ୍ରକୂଳକୁ ଚାଲିଲା। ସମୁଦ୍ର ପାଣି ସେତେବେଳକୁ କଳାଭଅଁର ପରି ହୋଇଥାଏ। ମନେହେଉଥାଏ ଏକ ବଡ଼ ଝଡ଼ ଉଠିବ। କେଉଟ କୂଳରେ ଠିଆହୋଇ ମାଛକୁ ଡାକ ପକାଇଲା— "ସତ୍ୟ-ମାଛ ରେ ରଖ ତୋ କଥା
ଶୁଣି ଯାଅ ଆସି ମୋ ମନ ବ୍ୟଥା।"

କେଉଟ ଡାକ ଶୁଣି ମାଛ ଆସି କୂଳରେ ପହଞ୍ଚିଗଲା। ପଚାରିଲା, "କି ହୋ, ଆଉ କ'ଣ ମାଗିବାର ଅଛି ?

କେଉଟ କହିଲା, "ମାଗିବାକୁ ମୋର କି ଅଛି ଆଉ,
ସହି ନ ପାରେ ମୋ ଭାରିଯା ଦାଉ।
ଜମିଦାରପଣ ଅଣ୍ଟିଲା ନାହିଁ
ରାଜା କରି ଦିଅ କହୁଛି ଭାଇ !"

ମାଛ କହିଲା, "ଏଇ କଥା ତ— ତୁ ଯାଆ, ଯାଇ ଘରେ ପହଞ୍ଚିବା ବେଳକୁ ସେ ରାଜା ହୋଇସାରିଥିବ।" କେଉଟ ମାଛଠାରୁ ବିଦାୟ ନେଇ ଘରକୁ ଫେରିବାକୁ ବସିଛି, ଦେଖିଲା ଦୁଇ ଜଣ ସଇସ ଗୋଟିଏ ସୁନ୍ଦର ସଜାହୋଇଥିବା ଘୋଡ଼ା ଧରି ଅପେକ୍ଷା କରିଛନ୍ତି। ସେ ଘରମୁହାଁ ହେଉ ହେଉ ସେମାନେ କହିଲେ, "ମଣିମା, ରାଣୀମା' ଛାମୁଙ୍କ ପାଇଁ ଘୋଡ଼ା ପଠାଇଛନ୍ତି। ଘୋଡ଼ା ଚଢ଼ି ଆସନ୍ତୁ।" କେଉଟ 'ଆରେ, ନାହିଁରେ ନାହିଁରେ' କହି ଟାଣିହେଉଥାଏ। ସଇସମାନେ ତାକୁ ଘୋଡ଼ାରେ ବସାଇ ନେଇଆସିଲେ। କେଉଟ ଦେଖିଲା ତା ପଥର କୋଠିଟା ବଦଳିଯାଇ ଗୋଟିଏ ସୁନ୍ଦର ରାଜନଅର ହୋଇଯାଇଛି। କାନ୍ଥବାଡ଼ ସବୁ ଶଙ୍ଖ-ମଲମଲ ପଥର। ନଅର ଉପରେ ପତାକା ଉଡୁଛି। କେଉଟ ଯାଇ ନଅର ସିଂହଦ୍ୱାରରେ ପହଞ୍ଚୁ ପହଞ୍ଚୁ ସିପାହିମାନେ ତୂରୀ ବଜାଇ ଦଣ୍ଡପ୍ରଣାମ କରି ତାକୁ ଭିତରକୁ ପାଛୋଟି ନେଲେ। ନଅର ଭିତର କି ସୁନ୍ଦର ହୋଇଥାଏ ! ଚଟାଣରେ ମଖମଲ ଗାଲିଚ଼ା। କାନ୍ଥରେ ନାନା ପ୍ରକାର ଚିତ୍ର; ସୁନା-ରୁପାର ସାଜସଜ୍ଜା। ସିପାହିମାନଙ୍କ ଗହଣରେ କେଉଟ ଯାଇ ଦରବାରରେ ପହଞ୍ଚିଗଲା। କେଉଟୁଣୀ ସେତେବେଳକୁ ସୁନା ସିଂହାସନରେ ବସିଥାଏ। ଦରବାରିଆମାନେ

ଧାଡ଼ି ଧାଡ଼ି ହୋଇ କରପତ୍ର ଯୋଡ଼ି ବସିଥାନ୍ତି। ଦାସୀମାନେ ସିଂହାସନ ପଛରେ ଠିଆହୋଇ ଭଳିକି ଭଳି ଆଲଟ ଚାମର ପକାଉଥାନ୍ତି। କେଉଟୁଣୀ ହାତରେ ରାଜଦଣ୍ଡ ଧରି କଟମଟ କରି ଚାହିଁଥାଏ। କେଉଟ ତାକୁ ଚାହିଁ ଘଡ଼ିଏ ଠିଆହୋଇଗଲା। କିଛି ସମୟ ପରେ କେଉଟୁଣୀ ତାକୁ ପାଖକୁ ଡାକନ୍ତେ କେଉଟ ପଚାରିଲା, "ହଇ ଲୋ, ସତରେ ତ ତୁ ମୂଳକର ରାଜା ହୋଇଗଲୁ। ଏଥର ଆଉ ତୋର ଲୋଡ଼ା କଣ!! ସୁଖରେ ରହ!"

କେଉଟୁଣୀ କହିଲା, "ସତରେ ତୁମେ ଯାହା ମାଗୁଛ ତୁମ ସରଗ-ମାଛ ତା ଦେଇଦେଉଛି; କିନ୍ତୁ କ'ଣ କରିବି, ମତେ କାହିଁ ଏ ରାଜପଣ ଭଲ ଲାଗୁନାହିଁ।"

କେଉଟ ଆଶ୍ଚର୍ଯ୍ୟ ହୋଇ ପଚାରିଲା, "ହଇ ଲୋ, ଭଲ ଲାଗୁନାହିଁ କାହିଁକି? ସୈନ୍ୟସାମନ୍ତ, ହାତୀଛତି, ଘୋଡ଼ାଗାଡ଼ି, ଦାସୀପରିବାରୀ କେଉଁଥିର ଅଭାବ ରହିଲା ଯେ ତତେ ସୁଖ ଲାଗୁନାହିଁ।"

କେଉଟୁଣୀ କହିଲା, "ଆହେ ଅଭାବ କିଛି ନାହିଁ, ସତକଥା। ହେଲେ, ଦରବାରିଆମାନେ କହୁଛନ୍ତି ଆମ ଉପରକୁ କାଳେ ସମ୍ରାଟ୍ ଅଛନ୍ତି। ତାଙ୍କ ପାଖକୁ ଯାଇ ଆମକୁ କାଳେ ଭେଟି-ଭେଟଣ ଦେବାକୁ ପଡ଼ିବ। ମତେ କାହିଁକି ଏ କଥାଟା ଭଲଲାଗୁନାହିଁ।"

—"ଏଁ! ତୁ ଆଉ ସେତକ କରନ୍ତୁ ନାହିଁ କି? ତୁ କଣ ଏକା —ଯେତେ ରାଜା ଅଛନ୍ତି ସମସ୍ତେ ସମ୍ରାଟ୍‌ଙ୍କୁ ସେପରି ମାନିଛନ୍ତି କି?"

କେଉଟୁଣୀ ମୁହଁ ଫୁଲାଇ କହିଲା, "ନା-ନା, ମୁଁ ସେ ସମ୍ରାଟ୍-ଫମ୍ରାଟ ମାନିବିନାହିଁ। ତୁମେ କାଲି ସକାଳୁ ସକାଳୁ ସମୁଦ୍ରକୂଳକୁ ଚାଲିଯାଅ। ସେ ମାଛକୁ କହିବ, ସେ ମୋତେ ସମ୍ରାଟ୍ କରିଦେଉ।"

କେଉଟ ଏ କଥା ଶୁଣି ଚମକି ଉଠିଲା। କହିଲା, "ହଇ ଲୋ, ଇଏ କି କଥା କହୁଛୁ! ଦେଶରେ ତ ଜଣେ ସମ୍ରାଟ୍। ସେ ସମ୍ରାଟ୍ ଥାଉ ଥାଉ, ତୁ କି ରାଜାରେ ରାଜାଟେ ଯେ, ତୁ ସମ୍ରାଟ୍ ହୋଇଯିବୁ? ଏପରି ନ ହେବା କଥାସବୁ ତୋ ମୁଣ୍ଡକୁ ଆସୁଛି କିପରି?"

କେଉଟୁଣୀ କହିଲା, "ତୁମର ଅକଲ ବୋଲି ମୋଟେ ନାହିଁ। ଆମେ ଚାହିଁବାମାତ୍ରେ ଯେ ଜମିଦାରକୁ ରାଜା କରିଦେଇ ପାରିଲା, ସେ କ'ଣ ରାଜାକୁ ସମ୍ରାଟ୍ କରିଦେଇ ପାରିବନାହିଁ? ନିଶ୍ଚୟ ପାରିବ। ତୁମେ ସକାଳେ ଶେଯରୁ ଉଠୁ ଉଠୁ ସମୁଦ୍ରକୂଳକୁ ଯାଇ ମାଛକୁ କହିଦେବ।"

କେଉଟ କହିଲା, "ଆଲୋ, ମାଛ କଣ କରିପାରିବ, କଣ ନ ପାରିବ; ମୁଁ କ'ଣ ସେ କଥା କହୁଛି? ତୋ ପରା ଲୋକ ସମ୍ରାଟ୍ ହେବା ଉଚିତ କି?"

ଏ କଥା ଶୁଣି କେଉଟୁଣୀ-ରାଣୀ ଆଖି ତରାଟି ଓଠ କାମୁଡ଼ି କହିଲା,

"ହେଇଟି, ମୁଁ ମୁଲକର ରାଜା। ତୁମେ ମୋର ଜଣେ ସାମାନ୍ୟ ପ୍ରଜା। ମୋ ଆଗରେ କଥା କହିବାବେଳେ ଜଗିରଖି କଥା କହିବ। ହଁ, କାଲି ସକାଳୁ ଯଦି ମୋ ଆଦେଶ ଅନୁସାରେ କାମ ନ କର, ତେବେ କହିଦେଉଛି, ଅବସ୍ଥା ଭଲ ହେବ ନାହିଁ।"

ଭାରିଯାର ଏ ଗର୍ଜନ, ଏ ରୂପ ଦେଖି କେଉଟ ବିଚରା କାନମୁଣ୍ଡା ଆଉଁସି ସକାଳୁ ସକାଳୁ ସମୁଦ୍ରକୂଳକୁ ଚାଲିଗଲା। ସମୁଦ୍ରକୂଳରେ ଠିଆହୋଇ ଡାକ ପକାଇଲା –

"ସତ୍ୟ-ମାଛ ରେ ରଖ ତୋ କଥା,
ଶୁଣି ଯାଅ ଆସି ମୋ ମନ ବ୍ୟଥା।"

କେଉଟର ଡାକ ଶୁଣି ସତ୍ୟ-ମାଛ କୂଳକୁ ଚାଲିଆସିଲା। ପଚାରିଲା, "କି ହୋ, ତୁମ ଭାର୍ଯ୍ୟା କଣ ରାଜା ହୋଇ ବି ସନ୍ତୁଷ୍ଟ ହେଲା ନାହିଁ?"

କେଉଟ କହିଲା – "ସରଗ-ମାଛ ହୋ ପାଣିରେ ଥାଉ,
ସହି ନ ପାରେ ମୁଁ ଭାରିଯା ଦାଉ।
ରାଜପଣ ତାକୁ ଅଣ୍ଟିଲା ନାହିଁ;
ତା' ମନ ସମ୍ରାଟ୍ ହୋଇବ ଭାଇ!"

ମାଛ କହିଲା, "ଏହି କଥା ତ? ତୁମେ ଘରକୁ ଯାଅ; ଏ ଭିତରେ ତୁମ ଭାର୍ଯ୍ୟା ସମ୍ରାଟ୍ ହୋଇସାରିବଣି।"

କେଉଟ ମାଛଠାରୁ ବିଦାୟ ନେଇ ଘରମୁହାଁ ହେଉ ହେଉ ଦେଖିଲା, ହାତୀଛତି ଧରି ତୂରୀ ବଜାଇ ସିପାହିମାନେ ତା ପାଖକୁ ଏକ ପାଲିଙ୍କି ନେଇ ଆସୁଛନ୍ତି। ସେମାନେ କେଉଟକୁ ପାଲିଙ୍କିରେ ବସିବାକୁ ପ୍ରାର୍ଥନାକରି କହିଲେ, "ମଣିମା, ମଣୋହି ବେଳ ଗଡ଼ିଯାଉଛି; ଛାମୁ ଶୀଘ୍ର ନଅରକୁ ଆସନ୍ତୁ।" କେଉଟ ବିଚରା ଥାଥାମାମା ହୋଇ ପାଲିଙ୍କିରେ ବସିଗଲା। ସିପାହିମାନେ ବାଜା ବଜାଇ ନଅର ପାଖକୁ ପାଲିଙ୍କି ବୋହିନେଲେ। ସେ ଆଉ ପୂର୍ବର ନଅର ହୋଇ ରହି ନଥାଏ। କେତେ ଜାତିର ରଙ୍ଗିନ ଶଙ୍ଖମଲମଲ ପଥରରେ ସେ ନଅର ଯେ ତିଆରି ହୋଇଥାଏ, ତାହା କଥାରେ କହି ହେବ ନାହିଁ। କାନ୍ଥବାଡ଼ରେ ସୁନା-ରୁପାର ଡାଳି ଲତା ସବୁ ଝଟକୁଥାଏ। ଗମ୍ବୁଜ ଉପରେ ଫରଫର ହୋଇ ପତାକା ଉଡୁଥାଏ। ଗମ୍ବୁଜ ଉପରେ ନାଗରା ବାଜୁଥାଏ। କେଉଟର ପାଲିଙ୍କି ଯାଇ ସିଂହଦ୍ୱାରରେ ପହଞ୍ଚୁ ପହଞ୍ଚୁ ଲୋକେ ତାକୁ ଦରବାରକୁ ପାଛୋଟିନେଲେ। କେଉଟ ଯାଇ ଦେଖିଲା ଦରବାରରେ ପୁରୁଷେ ଉଚ୍ଚ ସୁନାର ସିଂହାସନରେ କେଉଟୁଣୀ ରାଜଦଣ୍ଡ ଧରି ବସିଛି। ତା ମୁଣ୍ଡରେ ଦି'ହାତ ଉଚ୍ଚର ମୁକୁଟ। ସେଥିରେ ହୀରା ନୀଳା ମୋତି ମାଣିକ ଝଟକୁଥାଏ। ସାନ ରାଜାମାନେ ଧାଡ଼ି ଧାଡ଼ି ହୋଇ ବସିଥାନ୍ତି। ପଛରେ ଦାସୀମାନେ ଆଲଟ ଚାମର ପକାଉଥାନ୍ତି। କେଉଟୁଣୀ ମୁହଁଟା ଖାଲି

ଦାଉଦାଉ ହୋଇ ଜଳୁଥାଏ। କେଉଟ ତା ଆଖି-ତରାଟ ଦେଖି ଚମକି ପଡ଼ିଲା। ଯାହାହେଉ, ସେଦିନ ବିରାଟ ଭୋଜି ହୋଇ ରାଜା ମହାରାଜାମାନଙ୍କୁ ଖାଇବାକୁ ଦିଆଗଲା। ନଅରରେ ନାଟତାମସା ହୋଇ ରାତି ବାର କି ଗୋଟାଏ ପର୍ଯ୍ୟନ୍ତ ହସଖେଳ ଚାଲିଲା। ତା'ପରେ ଯେ ଯାହାର ଶୋଇବାକୁ ଗଲେ।

କେଉଟ ବିଚରା ହାଲିଆ ହୋଇ ଶେଯରେ ପଡୁ ପଡୁ ଶୋଇପଡ଼ିଲା। କେଉଟୁଣୀ ଆଖିକୁ କିନ୍ତୁ ନିଦ ଆସିଲା ନାହିଁ। ଛାର ମାଛବିକାଳି ଅବସ୍ଥାରୁ ଦେଶର ସମ୍ରାଟ୍ ପର୍ଯ୍ୟନ୍ତ ହୋଇଗଲା! ତଥାପି ତା ମନରେ ଆଶ୍ୱସ୍ତି ନଥାଏ। ସେ ଶେଯରେ ପଡ଼ି ପଡ଼ି ଭାବୁଥାଏ, ଏହାପରେ ଆଉ କ'ଣ ହୋଇପାରେ? ଏପରି ଭାବୁ ଭାବୁ ରାତିପାହାନ୍ତିଆ ବେଳକୁ ଯାଇ ତା ଆଖିକୁ ନିଦ ଆସିଲା। ଫଳରେ ରାତି ପାହି ସକାଳ ହେବା ପରେ ବି ତା ନିଦ ଭାଙ୍ଗିଲା ନାହିଁ। ସମ୍ରାଟ୍ କେତେବେଳେ ଉଠିବେ ବୋଲି ଦାସୀ-ପୋଇଲୀମାନେ ଜଗିବସିଥାନ୍ତି। ଏ ଭିତରେ କେଉଟ ଉଠି ଦାନ୍ତ ଘଷିବାକୁ ଚାଲିଗଲା। ସେପଟେ ସୂର୍ଯ୍ୟ ଉଦୟ ହେଲେ। ଖରା ପଡ଼ିଲା। କେଉଟୁଣୀ ଘୁଙ୍ଗୁଡ଼ିମାରି ଶୋଇଥାଏ, ଝରକାଦେଇ ଖରା ଆସି ତା ମୁହଁରେ ପଡ଼ିବାରୁ ତା ନିଦ ଭାଙ୍ଗିଗଲା। ସେ ବିରକ୍ତ ହୋଇ ପାଟିକଲା, "ଏ ଦାସୀ, ଖରା କାହିଁକି ପଡ଼ିଲା?"

ଏତେ ବଡ଼ ଦେଶର ସମ୍ରାଟ୍। ସେ ରାଗି ପଚାରୁଛନ୍ତି। ତାଙ୍କୁ ଉଚିତ ଉତ୍ତର ଦେବାକୁ କୌଣସି ଦାସୀର ସାହସ ପାଇଲା ନାହିଁ। କେଉଟୁଣୀ ପୁଣି ପାଟିକରି ପଚାରିଲା, "ଏ ଖରା, ତୁ କଣ ଜାଣିନୁ ମୁଁ ଶୋଇଛି? ତୁ କାହିଁକି ମୋ ମୁହଁରେ ପଡ଼ିଲୁ?"

ଦାସୀମାନେ ହସିବେ କି କାନ୍ଦିବେ, ଜାଣିପାରିଲେ ନାହିଁ। ଏ ତାକୁ ସେ ଆକୁ ଆଗକୁ ଠେଲିଲେ– "ତୁ ଯାଇ ମଣିମାଙ୍କୁ କହିଦେ, ...ଆଲୋ ତୁ ଯା...।" ଏପରି ପାଟିତୁଣ୍ଡ ଶୁଣି କେଉଟ ଦାନ୍ତଘଷା ଛାଡ଼ି କଥା କ'ଣ ବୁଝିବାଲାଗି ସେଠାକୁ ଚାଲିଆସିଲା। ସବୁ ଶୁଣି ସେ କେଉଟୁଣୀ ପାଖକୁ ଯାଇ କହିଲା, "ଆଲୋ, ରାତି ପାହି ସକାଳ ହେଲା। ସୂର୍ଯ୍ୟ ଉଇଁଲେ– ଖରା ପଡ଼ିବ ନାହିଁ?"

କେଉଟୁଣୀ ବିରକ୍ତହୋଇ କହିଲା, "ଏପରି କଥା? କିନ୍ତୁ ସୂର୍ଯ୍ୟକୁ ଉଇଁବାକୁ କିଏ କହିଲା? ମୁଁ ଶୋଇଛି ବୋଲି ସେ କ'ଣ ଜାଣିନାହିଁ?"

ଏତିକିବେଳେ ଜଣେ ଦାସୀ ସାହସ କରି କହିଦେଲା, "ମଣିମା, ସୂର୍ଯ୍ୟ ଚନ୍ଦ୍ର ତ ଆମ କଥା ମାନି ଚଳନ୍ତି ନାହିଁ, ଭଗବାନଙ୍କ ଆଦେଶ ନେଇ ସେ ଆତଯାତ ହୁଅନ୍ତି।" ଏକଥା ଶୁଣି କେଉଟୁଣୀ ରାଗରେ ଲାଲ୍ ହୋଇଗଲା। ସେ କେଉଟକୁ କହିଲା, "ଆହେ ଶୁଣୁଛ– ମୋର ଏ ସମ୍ରାଟ୍ ହେବାରେ ଆଉ କିଛି ମୂଲ୍ୟ ନାହିଁ।"

କେଉଟ ପଚାରିଲା, "ଆଲୋ, ତୋର ପୁଣି କ'ଣ ଅଭାବ ହୋଇଗଲା ?"

—"ଶୁଣିଲ ପରା ସୂର୍ଯ୍ୟ ଚନ୍ଦ୍ର ମୋ ଆଦେଶରେ ଚଳୁନାହାନ୍ତି; ଭଗବାନଙ୍କ ଆଦେଶରେ ଚଳୁଛନ୍ତି— ଏତିକିରୁ ତୁମେ ବୁଝିପାରୁନା ?"

—"ଆଲୋ, ଯାହା ହେବା କଥା ତା ହେଉଛି— ତୁ ଏଥିକି ବ୍ୟସ୍ତ ହେଉଛୁ କାହିଁକି ଯେ ?"

—"ନା, ମୁଁ ଭଗବାନ ନ ହେଲାଯାଏଁ ମୋର ଶାନ୍ତି ନାହିଁ। ତୁମେ ଏହି ଲାଗେ ସମୁଦ୍ରକୂଳକୁ ଯାଅ।"

କେଉଟ କହିଲା, "ଆଲୋ, ମଣିଷ କଣ ଭଗବାନ ହୋଇପାରିବ ଯେ ମୁଁ ଯିବି ?" ତା କଥା ଶୁଣି କେଉଟୁଣୀର ରାଗ ପଞ୍ଚମକୁ ଉଠିଗଲା। ସେ ଆଖି ତରାଟି ଗର୍ଜନ କରିବାକୁ ଲାଗିଲା— "ତୁମେ ଭୁଲିଯାଉଛ ଯେ ମୁଁ ଦେଶର ସମ୍ରାଟ୍। ଦେଖୁଛି, ତମେ ମୋର କଥା-କଥାକେ ଯୁକ୍ତି କରୁଛ। ମୁଁ ସମ୍ରାଟ୍। ମୋର ଆଦେଶ, ତୁମେ ଏହିକ୍ଷଣି ସମୁଦ୍ରକୂଳକୁ ଯାଇ ମାଛକୁ କହ ଯେ ମତେ ଭଗବାନ କରିଦେଉ।"

କେଉଟ ବିଚରା ଅଗତ୍ୟା ସମୁଦ୍ରକୂଳକୁ ଧାଇଁଲା। ପାଣିଧାରରେ ଠିଆହୋଇ ସେ ଡାକ ପକାଇଲା, "ସତ୍ୟ-ମାଛ ରେ ରଖ ତୋ କଥା,

ଶୁଣିଯାଅ ଆସି ମୋ ମନ ବ୍ୟଥା।"

ଏତେ ସକାଳୁ କେଉଟର ଡାକ ଶୁଣି ମାଛ କୂଳକୁ ଚାଲିଆସିଲା ସତ, ହେଲେ ତା ସହିତ ସମୁଦ୍ର ଭିତରୁ ମାଡ଼ିଆସିଲା ଏକ ପ୍ରଳୟଙ୍କରୀ ତୋଫାନ। ଚାହୁଁ ଚାହୁଁ ସମୁଦ୍ରରେ ତାଳଗଛ ପ୍ରମାଣ ଲହଡ଼ିମାନ ଉଠିଲା। ପାଣି ପବନର ଗର୍ଜନ ଭିତରେ ମାଛ କେଉଟକୁ ପଚାରିଲା, "କି ହୋ, ଆହୁରି ପୁଣି କ'ଣ ମାଗିବାକୁ ଅଛି ?"

କେଉଟ କହିଲା, "ସରଗ-ମାଛ ରେ ପାଣିରେ ଥାଉ,

ସହି ନ ପାରେ ମୋ ଭାରିଯା ଦାଉ।

ସମ୍ରାଟ୍ ପଦରେ ତା ମନ ନାହିଁ,

ଭଗବାନ କରି ଦିଅ ରେ ଭାଇ!"

ମାଛ ପଚାରିଲା, "ତୁମ ଭାର୍ଯ୍ୟାର ଭଗବାନ ହୋଇଯିବାକୁ ଇଚ୍ଛା! କି ଭାଇ, ସମ୍ରାଟ୍ ପଦରେ କ'ଣ ଅସୁବିଧା ହେଲା ?

କେଉଟ ସବୁ କଥା ବୁଝାଇ କହିଲା, "ମଣିଷ ସିନା ତା ଆୟତ୍ତକୁ ଆସିଲେ; ହେଲେ ସୂର୍ଯ୍ୟ, ଚନ୍ଦ୍ର ତା ଆୟତ୍ତକୁ ନ ଆସିଲାଯାଏଁ ତାର ସନ୍ତୋଷ ନାହିଁ।'

ସବୁ ଶୁଣିସାରି ମାଛ କହିଲା, "ଆରେ ମୂର୍ଖ ଅଯୋଗ୍ୟ! ମଣିଷ କି କେବେ ଭଗବାନ ହୋଇପାରେ ? ଅତି ଲୋଭରେ ସର୍ବନାଶ— ଯାଅ ତୋହର ନିଜ ବାସ।"

ଏତିକି କହି ମାଛ ସମୁଦ୍ରପାଣିରେ ଉଭେଇଗଲା । ତା ସଙ୍ଗେ ସଙ୍ଗେ ମାଡ଼ିଆସିଲା ଝଡ଼ ତୋଫାନ । ଚତୁର୍ଦ୍ଦିଗ ଅନ୍ଧକାର ହୋଇଗଲା । ବାଟଘାଟ ନ ପାଇ କେଉଟ ମାଛକୁ କେତେ କାକୁତିମିନତି ହୋଇ ଡାକିଲା; କିନ୍ତୁ ସେ ମାଛ ଆଉ ତା ଡାକ ଶୁଣିଲାନାହିଁ । ଝଡ଼ ତୋଫାନ ଛାଡ଼ି ଆକାଶ ପରିଷ୍କାର ହୋଇଯିବା ପରେ କେଉଟ ଘରକୁ ଲେଉଟିଲା । କିନ୍ତୁ ଦେଖିଲା, ସେତେବେଳକୁ ଆଉ ତାର ସେ ନଅର ନାହିଁ, କି ସେ ଦାସଦାସୀ ନାହାନ୍ତି । ନଅର ସ୍ଥାନରେ ସେହି ପୁରୁଣା ଭଙ୍ଗା କୁଡ଼ିଆଟି ଠିଆହୋଇଛି । ଚିରା-ଲେଙ୍କଡ଼ା ଲୁଗାଖଣ୍ଡିଏ ପିନ୍ଧି କେଉଟୁଣୀ କୁଡ଼ିଆ ଦୁଆରେ ବସି କପାଳକୁ ନିନ୍ଦି ହେଉଛି, "ହାୟ, ମୁଁ କି କର୍ମ କଲି !!"

# କପାଳିଆ ହାନ୍‌ସ

ଦୂର ଗାଆଁରେ ମାଲିକ ଘରେ କିଛି ଦିନ ଚାକିରି କରି ରହିଯିବା ପରେ ଦିନେ ହାନ୍‌ସ କହିଲା, "ମାଲିକେ, ଆଉ କାମରେ ମନ ଲାଗୁନାହିଁ । ମୋ ଦରମାପତ୍ରଗଣ୍ଡାକ ଦେଇଦିଅ; ଗାଆଁକୁ ଯାଇ ମାଆକୁ ଦେଖିଆସିବି ।"

ମାଲିକ କହିଲେ, "ଆରେ, ତୁ ତ କେବେ ତୋ କାମରେ ଖଇଚ଼ା କରିନାହୁଁ । ମୁଁ କାହିଁକି ତୋ ଦରମା ଦେବାକୁ ପଛାଇବି । ନେ—" ଏହା କହି ସେ ହାନ୍‌ସ ହାତକୁ ମୁଣ୍ଡାଏ ରୁପା ବଢ଼ାଇଦେଲେ । ମଣିଷ ମୁଣ୍ଡପରି ମୁଣ୍ଡାଏ ରୁପା ହୋଇଥାଏ । ହାନ୍‌ସ ତା ଗାମୁଛାରେ ରୁପାମୁଣ୍ଡାଟି ବାନ୍ଧି କାନ୍ଧରେ ପକାଇଦେଲା । ସେ ଗାଆଁମୁହାଁ ହୋଇ ଚାଲିଛି, ଦେଖିଲା ଜଣେ ଲୋକ ଘୋଡ଼ା ଚଢ଼ି ଆରାମରେ ପକାଇଆସୁଛି । ଲୋକଟିର ଖୁସି ଦେଖି ହାନ୍‌ସ କହିଲା, "ସତରେ ଘୋଡ଼ାଚଢ଼ାଠୁଁ ସୁଖ ନାହିଁ । ବାଟରେ କେତେ କଣ୍ଟାଖୁଣ୍ଟା ଥାଉ, ଖାଲ ଢିପ କେତେ ପଡୁ, କେତେ ପାଣି କାଦୁଅ ଆସୁ, ଏ ଲୋକ ଆରାମରେ ଘୋଡ଼ା ଉପରେ ବସିଥିବ ପାଦକୁ କିଛି ବୋଲି କିଛି ବାଧିବ ନାହିଁ ।

ଘୋଡ଼ା ଚଢ଼ି ଆସୁଥିବା ଲୋକଟି କାନରେ ଏ କଥା ପଡୁ ପଡୁ ସେ ପଚାରିଲା, "ତା'ହେଲେ, ତୁ କାହିଁକି ଚାଲି ଚାଲି ଯାଉଛୁ ହାନ୍‌ସ ?"

ହାନ୍‌ସ କହିଲା, "ଆହେ, ମୋ କପାଳରେ ତ ବୋଝ ବୋହିବାକୁ ଲେଖାହୋଇଛି, ଘୋଡ଼ା ଚଢ଼ିବି କିପରି ? ଏ ବୋଝଟା ରୁପାମୁଣ୍ଡାଏ ସତ, ହେଲେ, ଚାଲି ଚାଲି ଗୋଡ଼ ବଥେଇଲାଣି; ବୋହି ବୋହି କାନ୍ଧ ବିନ୍ଧିଲାଣି ।"

ରୁପାମୁଣ୍ଡାଟି ଦେଖି ଘୋଡ଼ାଚଢ଼ାଳି କହିଲା, "ତାହେଲେ ଆଣ ମତେ ତୋ

ବୋଝ ଦେ। ତୁ ମୋ ଘୋଡ଼ା ନେ– କ'ଣ ରାଜି ଟି ?

ହାନ୍‌ସ କହିଲା, ''ରାଜି– କିନ୍ତୁ, ତୁମେ ଏ ରୁପାମୁଣ୍ଡାଟି ବୋହି ନେଇପାରିଲେ ହେଲା।''

ଘୋଡ଼ାଚଢ଼ାଳି ଘୋଡ଼ାରୁ ଓହ୍ଲାଇପଡ଼ି ରୁପାମୁଣ୍ଡାଟି ଧଇଲା ଓ ହାନ୍‌ସକୁ ଘୋଡ଼ାରେ ବସାଇଦେଇ କହିଲା, ''ଟିକିଏ ଲଗାମ ହୁଗୁଳା କରିଦେଇ ଚଲ୍ ଚଲ୍ କହିଲେ, ଘୋଡ଼ା ଦୌଡ଼ିବ।'' ଘୋଡ଼ାରେ ବସି କିଛି ସମୟ ଆରାମରେ ଚାଲିବା ପରେ ହାନ୍‌ସ ଭାବିଲା, ଘୋଡ଼ା ଦୌଡ଼ାଇଦେଲେ ଶୀଘ୍ର ଯାଇ ଘରେ ପହଞ୍ଚିଯିବ। ତେଣୁ ସେ ଲଗାମ ହୁଗୁଳାଇଦେଇ ଘୋଡ଼ାକୁ 'ଚାଲ୍ ଚାଲ୍' ବୋଲି ପାଟିକରିଦେଲା। ଏଥର ଦେଖ ଘୋଡ଼ାର ଦୌଡ଼– ସେ ଚାରିକାତ ଛାଟି ଡିଆଁ ମାରିବା ସଙ୍ଗେ ସଙ୍ଗେ ହାନ୍‌ସ ଚମକିପଡ଼ିଲା ଯେ ତା ହାତରୁ ଲଗାମ ଦଉଡ଼ିଟା ଖସିଗଲା ଓ ବିଚରା ଘୋଡ଼ା ପିଠିରୁ ଛିଟିକି ଯାଇ ରାସ୍ତାକଡ଼ ନାଳ ଭିତରେ ପଡ଼ିଲା। ଘୋଡ଼ା ହୁରୁଡ଼ିଯାଇ କୁଆଡ଼େ ଦଉଡ଼ିପକାନ୍ତା କେଜାଣି, ଭାଗ୍ୟେ ସେହି ବାଟଦେଇ ଜଣେ ଗଉଡ଼ ତା ଗାଈଟି ନେଇ ହାଟକୁ ଯାଉଥିଲା। ଗଉଡ଼ ଧାଇଁଯାଇ ଘୋଡ଼ାକୁ ଅଟକାଇଦେଲା। ସେତେବେଳକୁ ହାନ୍‌ସ ନାଳଭିତରୁ ଉଠି ଝାଡ଼ିଝୁଡ଼ି ହେଉଥାଏ। ଗଉଡ଼ ପଚାରିଲା, ''କଣ ପଡ଼ିଗଲ କି ବାବୁ ?''

ହାନ୍‌ସ କହିଲା, ''ଆଃ ! ଏଭଳି ଜନ୍ତୁରେ ଚଢ଼ି ମୁଁ ଭାରି ଭୁଲ କରିଛି। ଯାହା କହ, ଘୋଡ଼ା ତୁଳନାରେ ଗାଈ ଢେର୍ ଭଲ। ଗାଈଟିଏ ରଖିଥିଲେ ତୁମେ ଯେଉଁଠି କହିବ ସେ ସେଇଠି ଚରିବ, ଯେପରି କହିବ ସେପରି ଚାଲିବ; ଦୁଧ, ଦହି, ଛେନା, ଲହୁଣି କେଉଁଥିରେ ଅଭାବ ରହିବ ନାହିଁ। ଯଦି ଗାଈଟିଏ ମିଳନ୍ତାନା, ଏ ଘୋଡ଼ାଟା ଦେଇଦିଅନ୍ତି।''

ଗଉଡ଼ କହିଲା, ''ତା'ହେଲେ ସେଇଆ ହେଉ। ତୁମେ ମୋ ଗାଈ ନିଅ, ମୁଁ ତୁମ ଘୋଡ଼ା ନେଉଛି। କ'ଣ ରାଜି ତ ?''

ହାନ୍‌ସ ''ହଁ, ରାଜି'' –ବୋଲି କହୁ କହୁ ଗଉଡ଼ ଘୋଡ଼ା ଚଢ଼ି ସେଠାରୁ ଛୁଟିପକାଇଲା। ହାନ୍‌ସ ଭାବିଲା, 'ମଣିଷର କପାଳ ଖୋଲିଲାବେଳେ ଇମିତି ଖୋଲିଯାଏ। ଖଣ୍ଡେ ରୁଟି ମିଳିଗଲେ ଏଥର ଛେନା, ଲହୁଣି ମଡ଼ାଇ ଖାଇବି। ଶୋଷ ହେଲେ ତ ଦୁଧ ଦୁହିଁ ପିଇବି– ମୋର ଆଉ ଚିନ୍ତା କ'ଣ ?' ଏପରି ମନଖୁସିରେ ଚାଲୁ ଚାଲୁ ବାଟରେ ଏକ ହାଟ ପଡ଼ିଲା। ପାଖରେ ଯାହା ଦୁଇଟା ପଇସା ଥିଲା, ସେତକ ଦେଇ ହାଟରୁ ଖଣ୍ଡିଏ ରୁଟି କିଣି ଖାଇପକାଇଲା। ଏଥର ଟିକିଏ ତୃପ୍ତି ହୋଇ ଗାଆଁ ଆଡ଼କୁ ଗାଈ ଅଡ଼େଇ ଚାଲିଛି। ଏ ଭିତରେ ଦି'ପହର ଖରାବେଳ ହୋଇଗଲା। ଖରାରେ ଚାଲୁ ଚାଲୁ ଭାରି ଶୋଷ ହେବାରୁ ସେ ଭାବିଲା ଦୁଧ ପିଇଦେଲେ ଶୋଷ ମରିଯିବ। ତେଣୁ ହାନ୍‌ସ ଗାଈଟିକୁ

ଗୋଟିଏ ଗଛମୂଳରେ ବାନ୍ଧିଦେଇ ଦୁଧ ଦୁହିଁବସିଲା; କିନ୍ତୁ ସେ ଗାଈ ଚିଉରେ ହାତଦେଇଛି କି ନାହିଁ, ଗାଈ ଇମିତି ଏକ ଲାତ ମାରିଲା ଯେ ସେ ଲୋଟିପଡ଼ିଲା। କିଛିକାଳ ଚେତା ହଜିଗଲା। ସେ ଅଚେତ ହୋଇ ପଡ଼ିଛି, ଏ ସମୟରେ ସେ ବାଟଦେଇ ଜଣେ କଂସେଇ ଗୋଟିଏ ଘୁଷୁରି ନେଇ ଆସିଲା। ଅବସ୍ଥା ଦେଖି କଂସେଇ ହାନ୍‌ସକୁ ଅଣ୍ଟା ଆଉଁସା କରି ଉଠାଇବା ପରେ ପଚାରିଲା, ‘‘କିରେ, ଘଟଣା କ’ଣ ? ଇମିତି ପଡ଼ିଗଲୁ କିପରି ?’’

ହାନ୍‌ସଠାରୁ ସବୁକଥା ଶୁଣିବାପରେ କଂସେଇ ତାକୁ ନିଜ ପାଣିଥଳିରୁ କିଛି ପାଣି ପିଇବାକୁ ଦେଇ କହିଲା, ‘‘ଆରେ, ଏ ବୁଢ଼ୀ ଗାଈଟା କି ଦୁଧ ଦେବ ଯେ ତୁ ଦୁହିଁବସିଥିଲୁ ! ହଇରେ, ଯା ଦେହରେ ତ ହାଡ଼ ଦି’ଖଣ୍ଡ ଉପରେ ଚମଡ଼ା ଟିକିଏ ଝୁଲୁଛି– ଏଇଟା କୋଉ କାମ ଦେବ ଶୁଣେ ?’’

ହାନ୍‌ସ କହିଲା, ‘‘ମୁଁ କଣ ଏପରି ସାରୁ ଭିତରେ ମାରୁ ଅଛି ବୋଲି ଜାଣିଥିଲି ? ଏ ବୁଢ଼ୀ ଗାଈଟା ସତରେ ଘୁଷୁରିଠଉଁ ବି ହୀନ। ସତରେ ମଉସା, ମୁଁ ଖାସା ଅଡୁଆରେ ପଡ଼ିଲି।’’

କଂସେଇ କହିଲା, ‘‘ଏଥିକି ଏତେ ଚିନ୍ତା କରୁଛୁ କାହିଁକି ? ତୁ ଯଦି ମୋ ଘୁଷୁରିଟା ନେଇ ତୋ ଗାଈଟା ଦେଇଦେବୁ, ଅଡୁଆ ତୁଟିଯିବ। ମୁଁ କଂସେଇ ଲୋକ; ମୋତେ ଗାଈ ଯେତିକି, ଘୁଷୁରି ସେତିକି।’’

ହାନ୍‌ସ ଖୁସିରେ କହିପକାଇଲା, ‘‘ସେଇତକ ଯଦି କରନ୍ତ, ତେବେ ମୁଁ ଏ ଜଞ୍ଜାଳରୁ ଉଦ୍ଧାର ପାଆନ୍ତି ମଉସା !’’

ହାନ୍‌ସକୁ ଘୁଷୁରିଟି ଦେଇ କଂସେଇ ସେ ଗାଈଟି ନେଇ ପଳାଇଗଲା। ଘୁଷୁରି ଗୋଡ଼ରେ ଦଉଡ଼ିଟିଏ ବାନ୍ଧି ହାନ୍‌ସ ତାକୁ ନେଇ ଗାଁ ଆଡ଼େ ଚାଲିଛି। ଦେଖିଲା ସେପଟୁ ଜଣେ ଗାଉଁଲି ଲୋକ କାଖରେ ଗୋଟିଏ ହଂସ ଜାକି ଆସୁଛି। ହାନ୍‌ସକୁ ଦେଖି ଲୋକଟି ପଚାରିଲା, ‘‘କି ଭାଇ, ଅବିକା ବେଳ କେତେ ହେବ ?’’

ହାନ୍‌ସ କହିଲା, ‘‘ମୋର ଆଉ କଣ ସେ ଖିଆଲ ଅଛି ? ଗୋଟେ ଦୁର୍ଯୋଗରୁ ବର୍ତ୍ତିଗଲି ଯେ ମନଖୁସିରେ ଚାଲିଛି।’’ ତା’ପରେ ସେ ଯାହା ଯାହା ଘଟିଯାଇଥିଲା ସେଗୁଡ଼ାକ ଗପିଗଲା। ସବୁକଥା ଶୁଣି ଗାଉଁଲିଆ କହିଲା, ‘‘ଘୁଷୁରିଟା ଆଣିଛ, ଭଲ କରିଛ; କିନ୍ତୁ ମୋ ହଂସକୁ ଦେଖୁନା, ଦେଢ଼ମାସର ଛୁଆ ହେଲେ କ’ଣ ହେଲା, ତା ଓଜନ ଦେଖ !’’

ହାନ୍‌ସ ତା ହଂସଟିକୁ ହାତରେ ତଉଲି କହିଲା, ‘‘ହଁ, ହୋଇଛି। କିନ୍ତୁ ମୋ ଘୁଷୁରି ଯା ତହୁଁ ଢେର୍ ବେଶି ଓଜନ ହେବ।’’

–‘‘ତା ଆଉ ହୁଅନ୍ତାନି କି ! କିନ୍ତୁ ଭାଇ, ମତେ କାହିଁକି ଲାଗୁଛି, ଏ ଘୁଷୁରି ତୁମକୁ ଅଡୁଆରେ ପକାଇବ।’’

— "କାହିଁକି ?"

ଲୋକଟି କହିଲା, "ଏ ଗାଆଁ ସରପଞ୍ଚଙ୍କର ଗୋଟାଏ ଘୁଷୁରି କିଏ ଚୋରାଇନେଇଛି। ମତେ କାହିଁକି ଲାଗୁଛି, ଏଇଟା ତାଙ୍କରି ଘୁଷୁରି। ଗାଆଁ ଲୋକେ ତୁମକୁ ଦେଖିଲେ ଆଉ ଛାଡ଼ିବେଟି ?"

ହାନ୍ସ କାତର ହୋଇ କହିଲା, "ଇରେ ଭାଇ, ମୁଁ କଣ ଏତେ କଥା ଜାଣେ ! ମୁଁ ତ ମୋ ଗାଈଟି ଦେଇ କଂସେଇଠୁ ଘୁଷୁରିଟା ଆଣିଛି।"

— "ଯାହାଠୁଁ ଆଣିଥା, ଲୋକେ ସେ କଥା ବୁଝିବେ ନାହିଁ। ଘୁଷୁରି କି ଘୁଷୁରି ନେବେ, ପୁଣି ମାଡ଼ଦେଇ ମାମୁଘରକୁ ପଠାଇଦେବେ। ବୁଝିଶୁଝି କାମକର।"

ହାନ୍ସ ଭୟରେ ଥରି ଥରି କହିଲା, "ଏ ଭାଇ, ମତେ ରକ୍ଷାକର। ତୁମେ ତ ଗାଁ ପାରହୋଇ ପଳାଇ ଆସିଲଣି; ତମେ ଭଲା ଘୁଷୁରିଟି ନେଇ ମତେ ହଂସଟି ଦିଅନ୍ତ।"

ଲୋକଟି ଥଙ୍ଗେଇ ଥଙ୍ଗେଇ କହିଲା, "ଚୋରା ଘୁଷୁରିଟା ଧରାପଡ଼ିଲେ ମଣିଷର ମାନ-ମହତ ତଳେ ପଡ଼ିଯିବ। ...ତଥାପି ପରକୁ ସାହାଯ୍ୟ କରିବା ମଣିଷର ଧର୍ମ। ହଉ ନେ, ତୁ ହଂସ ଧର, ମୁଁ ଶୀଘ୍ର ଘୁଷୁରି ନେଇ ଏଠାରୁ ପଳାଏ।" ଏହା କହି ସେ ଘୁଷୁରି ନେଇ ଗୋଟିଏ ବିଲମାଳିଆ ରାସ୍ତାରେ ସେଠାରୁ ପଳାଇଗଲା ଏବଂ ହାନ୍ସ କାଖରେ ହଂସଟିକୁ ଜାକି ଯାଉ ଯାଉ ଭାବିଲା, "ଓଃ, ମଣିଷର ଗୋଟେ ଦୁର୍ଯୋଗ କଟିଗଲା। କି ହାଲୁକା ଲାଗୁଛି ସତେ !! —ମୋ ଭାଗ୍ୟ ସଳଖ ନହୋଇଥିଲେ ଇମିତି ହଂସଟିଏ ମିଳନ୍ତା ନାହିଁ। ଘରକୁ ଯାଉ ଯାଉ ହଂସଟାକୁ ମାରି ବଢ଼ିଆ ତରକାରିଟାଏ କରିଦେବି। ଗୁଡ଼ାଏ ଚର୍ବି ବି ବାହାରିବ। ସେତକ ରଖିଦେଲେ, ଶୀତଦିନଟାରେ ଦେହଲଗା ତେଲ କିଣିବାକୁ ପଡ଼ିବନାହିଁ। ଆଉ ଏ କଅଁଳିଆ ହଂସ ପରଗୁଡ଼ାକରେ ତକିଆଟିଏ କରିଦେଲେ କି ନରମା ନ ହେବ ସତେ ! ରାତିରେ ତ ମଣିଷ ଦି'ଘଡ଼ି ଆରାମରେ ଶୋଇପଡ଼ିବ। ହଂସଟିକୁ ଦେଖିଲେ ସତରେ ମୋ ମାଆ ଭାରି ଖୁସି ହେବ।" ଏପରି ଖୁସି ହୋଇ ଚାଲୁ ଚାଲୁ ସେ ଯାଇ ଆଉ ଗୋଟିଏ ଗାଁମୁଣ୍ଡରେ ପାଇଗଲା— ସେହି ଗାଆଁଟି ପାରହେଲେ ତା ନିଜ ଗାଆଁ ପଡ଼ିବ। ଗାଆଁମୁଣ୍ଡରେ ଜଣେ ଲୋକ ବସି କଇଁଚିରେ ଶାଣ ଦେଉ ଦେଉ ଗୀତ ଗାଉଥାଏ।

"ଦେଶ ଦେଶ ବୁଲି ଶାଣ ଦିଏ ମୁଁ କାହାକୁ ନ ମଣେ ପର,
ଖାଟେଣି ନ କରି ପେଟ ପୂରିଯାଏ ସବୁରି ପିଣ୍ଡା ମୋ ଘର।
ଖୁସିରେ କାଟଇ ଦିନ, ଆଉ କିଏ ମୋ ସମାନ ?"

ହାନ୍ସ ସେଠାରେ ଠିଆହୋଇ ଶାଣଦିଆ ଦେଖୁ ଦେଖୁ ଗୀତ ଶୁଣି କହିଲା, "ସତରେ ତୋ ଭଳିଆ ତୁ ! ଭାରି ଖୁସିରେ ଦିନ କାଟୁଛୁ— ନ ହେଲେ

କି ଇମିତି ଗୀତ ବୋଲି ବୋଲି କାମ କରନ୍ତୁ ?''

ଦେଶଫେରା ଶାଣଦେଲାବାଲା କହିଲା, ''ଭାଇ, ତୁ ବୋଲି ସିନା ବୁଝିଲୁ, ସମସ୍ତେ କଣ ବୁଝିପାରୁଛନ୍ତି ? ଦେଖ, ମୋ ପକେଟ କେବେହେଲେ ଖାଲି ପଡ଼େନି। ତୁ ବି ତ ବଢ଼ିଆ ହଂସଟିଏ ଧରିଛୁ ? କେତେ ପଇସାରେ କିଣିଲୁ ?''

ହାନ୍‌ସ କହିଲା, ''ମୁଁ ପଇସା ଦେଇ କିଣିନି. ଭାଇ, ଗୋଟିଏ ଘୁଷୁରି ବଦଳ ଦେଇ ହଂସଟି ଆଣିଛି।''

—''ଘୁଷୁରି କେଉଁଠୁ ଆଣିଲୁ ?''

—''ଗୋଟିଏ ଗାଈ ବଦଳ ଦେଇ ଆଣିଥିଲି।''

—''ଗାଈ କେଉଁଠୁ ଆଣିଲୁ ?''

—''ଗୋଟିଏ ଘୋଡ଼ା ବଦଳ ଦେଇ ଆଣିଥିଲି।''

—''ଘୋଡ଼ାଟି ?''

—''ମାଲିକ ଘରେ ବର୍ଷେ କାମ କଲି ଯେ, ମଜୁରି ବାବଦକୁ ସେ ମୁଣ୍ଡାଏ ରୁପା ଦେଇଥିଲା। ଏତେ ବଡ଼ ରୁପାମୁଣ୍ଡାଟା କିଏ ବୋହିବ ଭାବି ସେ ମୁଣ୍ଡାକ ରୁପା ଦେଇ ଏ ଘୋଡ଼ାଟି ଆଣିଥିଲି।''

—''କେତେ ମୁଣ୍ଡେ ରୁପା ରେ ? କେଉଁଠାରୁ ପାଇଲୁ ?''

—''ମାଲିକଘରେ ବରଷ-ବରଷଧରି ଖଟି କମେଇଥିଲି। ମୋ ମୁଣ୍ଡ ଭଳିଆ ବଡ଼ ରୁପାମୁଣ୍ଡାଏ।''

ଦେଶଫେରା ଶାଣବାଲା ସବୁ ଶୁଣିସାରି କହିଲା, ''ବେଶ୍ ବେଶ୍, ଭାଇ ବୁଦ୍ଧିମାନ୍ କାମ କରିଛୁ। ଏଥର ଇମିତି ଗୋଟାଏ କାମରେ ହାତ ଦେ, ଯେମିତି କେବେହେଲେ ପକେଟ ଖାଲି ହେବନାହିଁ।''

ହାନ୍‌ସ କହିଲା, ''ସତରେ ଯଦି ସେମିତି କିଛି ଗୋଟାଏ କାମ ବତାଇଦିଅନ୍ତ, ତେବେ ମୁଁ ବି ତୁମଭଳି ଗୀତ ଗାଇ ଜୀନ୍ଦେଗୀ ବିତାଇ ଦିଅନ୍ତି।''

—''କାହିଁକି, ଏଇ ଶାଣଦିଆ କାମଟି କରୁନୁ। ଖଣ୍ଡିଏ ଶାଣ ପଥର ଧରି ବୁଲିଲେ ତ କାମ ଚାଲିଲା। ତୁ ଯଦି କହିବୁ ମୁଁ ଖଣ୍ଡିଏ ଭଲ ପଥର କରେଇଦେବି— ଦାମ୍ ବେଶି ପଡ଼ିବ ନାହିଁ ରେ।''

—''କେତେ ପଡ଼ିବ ?''

—''ଆରେ, ସେ ହଂସଟା ଦେ, ମୁଁ ଖଣ୍ଡେ ପଥର ଦେଇଦେବି— ତୋ ପରା ଲୋକଠାରୁ ଅଧିକ କଣ ନେବି ?''

ଗୋଟିଏ ଭଲ ସଉଦା ହେବ ଦେଖି ହାନ୍‌ସ ଶାଣବାଲା ହାତକୁ ହଂସଟି ବଢ଼ାଇଦେଲା। ଶାଣବାଲା ତା ପାଖରେ ପଡ଼ିଥିବା ଖଣ୍ଡିଏ ସାଧାରଣ ପଥର ଉଠାଇ କହିଲା, ''ନେଇ ଯା, ଏଇଥିରେ ବଢ଼ିଆ କାମ ଚାଲିବ। ଶାଣ ଦେଉଥିବୁ,

ଗୁଣ ଗାଉଥିବୁ।''

ଜୀବନତମାମ ପକେଟ ଖାଲିନହେବା ଭଳି ସହଜ କାମଖଣ୍ଡିଏ ମିଳିଗଲା ଦେଖି ହାନ୍‌ସ ହରଷ ମନରେ ପଥରଟି ଧରି ଗାଆଁକୁ ଚାଲିଲା। କିନ୍ତୁ ଦିନତମାମ ପଡ଼ି ଉଠି ବାଟ ଚାଲି ଚାଲି ଶେଷକୁ ଖଣ୍ଡିଏ ପଥର ବୋହିନେବା କିଛି ସହଜ କାମ ନୁହେଁ; ଫଳରେ ନିଜ ଗାଁମୁଣ୍ଡରେ ପାଇବାବେଳକୁ ଝାଳନାଳ ବୋହି ହାନ୍‌ସ ବିଚରା ହାଲିଆ ହୋଇଯାଇଥାଏ। ତେଣୁ ଗାଆଁମୁଣ୍ଡ ପୋଖରୀରେ ଟିକିଏ ଧୂଆଧୋଇ ହୋଇ ମନ୍ଦିଏ ପାଣି ପିଇବ ବୋଲି ସେ ପୋଖରୀ ପାଖରେ ଅଟକିଗଲା। କିନ୍ତୁ ପୋଖରୀ ଧାରରେ ପଥରଟି ଥୋଇ ପାଣି ପିଇବ ବୋଲି ଯାଉଛି, ଏତିକିବେଳେ ଅସାବଧାନତାରୁ ପଥରଟିରେ ତା ଗୋଡ଼ ବାଜିଗଲା ଯେ ସେଇଟି ଗଡ଼ି ଗଡ଼ି ଯାଇ ଟୁବ୍‌କିନା ପାଣିରେ ପଡ଼ିଗଲା।

ପୋଖରୀର ଗଭୀର ପାଣିରେ ପଥରଟି ବୁଡ଼ିଗଲା ଦେଖି ହାନ୍‌ସର ଗୋଟିଏ ଦୀର୍ଘ ନିଃଶ୍ୱାସ ବାହାରିପଡ଼ିଲା। ମନ୍ଦିଏ ପାଣି ପିଇଦେଇ ସେ କହିଲା, ''ଯା' ହେଉ ପ୍ରଭୁଙ୍କ ଦୟାରୁ ମୋ ମୁଣ୍ଡରୁ ଗୋଟେ ବୋଝ ଉତୁରିଗଲା, ପାଣି ପିଇସାରି କୂଳକୁ ଉଠିବାବେଳକୁ ତାକୁ ଭାରି ହାଲୁକା ଲାଗୁଥାଏ। ଭାବୁଥାଏ, 'ମୋ ଭଳି କପାଳିଆ ଆଉ କେହି ନଥିବେ; ବୋଝ ନାହିଁ କି ଅତୁଆ ନାହିଁ' —ଯିମିତି ଖାଲି ହାତରେ ଘରୁ ବାହାରିଥିଲା, ସାତ ବରଷ ଖାଟିଣି ପରେ ସିମିତି ଖାଲି ହାତରେ ଆସି ଘରେ ପହଞ୍ଚିଗଲା।

## ପିୟୁପିୟୁ

କୋଇଲି ବୋବେଇଲେ ପିଲାମାନେ ତାକୁ ଖତେଇ ହୋଇ ପିୟୁପିୟୁ ବୋବାନ୍ତି। ମଫସଲ ଗାଆଁର ଜଣେ ଲୋକ ସେପରି ଗୋଟିଏ ଚଢ଼େଇକୁ ପିଲାଦିନେ ପିୟୁପିୟୁ କହି ଖତେଇ ହେଉଥିଲା; ଫଳରେ ସେହି ପିଲାଦିନରୁ ଲୋକେ ତାକୁ ପିୟୁପିୟୁ ବୋଲି ଡାକିବାକୁ ଲାଗିଲେ। ଏପରି ଡାକ ଶୁଣି ତାକୁ ଭାରି ଚିଡ଼ିମାଡ଼େ। ଦିନେ କ'ଣ ହୋଇଛିନା, ପିୟୁପିୟୁ ବିଲମାଳରେ ତା' ଗାଈ ଚରାଉଛି। ଏ ସମୟରେ ଗୋଟିଏ ଚଢ଼େଇ ପାଖ ଗଛ ଡାଳରେ ବସି ପିୟୁପିୟୁ ବୋଲି ରାବିଲା। ଲୋକଟି କହିଲା, ''ଗାଆଁ ଲୋକେ ଚିଡ଼େଇଲେ ଅଣ୍ଟିଲା ନାହିଁ ଯେ, ତୁ ଚଢ଼େଇଟା ଆସି ଫେରେ ଚିଡ଼ୋଉଛୁ? ତତେ ଦେଉଛି ରହ।'' ଏପରି କହି ସେ ଗୋଟିଏ ପଥର ଧରି ଚଢ଼େଇକୁ ମାରିଲା। କିନ୍ତୁ ପଥରଟା ଚଢ଼େ

ଦେହରେ ନ ବାଜି ଗାଈ ମୁଣ୍ଡରେ ବାଜିଲା। ଗାଈଟା ସେଇଠି ଓଲଟିପଡ଼ିଲା ଓ ତା ପ୍ରାଣବାୟୁ ଉଡ଼ିଗଲା। ଗାଈ ତ ମଲା, ତା ଚମଡ଼ାଟି ହେଲେ ବିକିଦେଲେ କିଛି ଟଙ୍କା ମିଳିଯିବ ଭାବି ପିୟୁପିୟୁ ଗାଈ ଦେହରୁ ଚମଡ଼ାଟି ଉତାରି ବିକିବା ଲାଗି ସହରକୁ ଚାଲିଗଲା।

ସହରରେ ଜଣେ ଧନୀ ମୋଚି ଚମଡ଼ା କାରବାର କରେ। ପିୟୁପିୟୁ ତା ଦୁଆରେ ଠିଆହୋଇ ଘର ଭିତରକୁ ଚାହିଁବା ତ ଘର କବାଟ ଭିତରୁ ଦିଆଯାଇଛି, ଝରକାବାଟେ ଦେଖାଯାଉଛି ମୋଚିଆଣୀ ଜଣେ ବାହାର ଲୋକ ସହିତ ଟୁପୁରୁଟାପୁରୁ ହୋଇ କ'ଣ କଥାହେଉଛି। ପିୟୁପିୟୁ ଡାକପକାଇଲା, "ଚମଡ଼ା ରଖିବ, ଚମଡ଼ା।" ଦୁଆରମୁହଁରେ ଲୋକଟିଏ ଠିଆହୋଇଛି ଦେଖୁଦେଖୁ ମୋଚିଆଣୀ ସେ ବାହାର ଲୋକଟିକୁ ଗୋଟିଏ ବଡ଼ ଡାବଲ ବାକ୍ସ ଭିତରେ ପୂରାଇଦେଇ କବାଟ ଫିଟାଇ, କହିଲା, "ଆରେ, ପରେ ଆସିବୁ। ମତେ ମୂଲଚାଲ ଆସିବ ନାହିଁ।"

ପିୟୁପିୟୁ ତ ମୋଚିଆଣୀର କୁକର୍ମ ଦେଖିପକାଇଛି। ସେ ଧରିବସିଲା, "ଯାହା ଦାମ୍ ଦେବ ଦିଅ, ଚମଡ଼ାଟି ରଖ।"

ମୋଚିଆଣୀ କହିଲା, "ପଇସାପତ୍ର ମୋ ପାଖରେ ନାହିଁ। ମୋଚି ଆସିଲେ କିଣିବ।"

ପିୟୁପିୟୁ କହିଲା, "ପଇସା ନ ଦିଅ, ସେ ଡାବଲ ବାକ୍ସଟା ଦିଅ।"

ମୋଚିଆଣୀ କହିଲା, "ନା, ନା... ଅନ୍ୟ ଯାହା ମାଗ ଦେବି, ଡାବଲ ବାକ୍ସଟା ଦେବି ନାହିଁ।"

ପିୟୁପିୟୁ ଧରିବସିଲା ସେ ଡାବଲ ବାକ୍ସଟିହିଁ ନେବ। ଏପରି କଥାବାର୍ତ୍ତା ଚାଲିଛି, ଏ ସମୟରେ ମୋଚି ଆସି ପହଞ୍ଚିଗଲା। ଘଟଣା କଣ ବୁଝୁ ବୁଝୁ ମୋଚିଆଣୀ କହିଲା, "ଲୋକଟା ଚମଡ଼ା ବିକିବାକୁ ଆସିଛି ଯେ, ମୋ ପାଖରେ ପଇସା ନାହିଁ ବୋଲି କହିବାରୁ ସେ ଡାବଲ ବାକ୍ସଟା ମାଗୁଛି। ମୁଁ ମନା କଲେ ବି ଯାଉନାହିଁ।"

ମୋଚି ଦେଖିଲା ଭଲ ଚମଡ଼ାଟିଏ ହୋଇଛି। ଛାର ଡାବଲ ବାକ୍ସଟା ତା' ତୁଳନାରେ କିଛି ନୁହେଁ। ତେଣୁ ସେ ଭାର୍ଯ୍ୟାକୁ ପାଟିକରି କହିଲା, "ତୋର ବୁଦ୍ଧିବୃତ୍ତି କିଛି ନାହିଁ; ଗରାଖଙ୍କ ସହିତ ପାଟିତୁଣ୍ଡ କଲେ ସେମାନେ ଆଉ ଆମ ଦୁଆରକୁ ଆସିବେଟି ? ଦେ, ଚମଡ଼ାଟି ରଖି ଡାବଲ୍ ବାକ୍ସଟା ଦେଇଦେ।"

ମୋଚିଆଣୀ ଆଉ କି ଯୁକ୍ତି କରିବ, ବୁଝିପାରିଲା ନାହିଁ। ତେଣେ ସେ ବାହାର ଲୋକଟି ଡାବଲ ଭିତରେ ବସି ଭୟରେ ଥରୁଥାଏ। ପିୟୁପିୟୁ ଚମଡ଼ାଟି ଥୋଇଦେଇ ଡାବଲଟି ଉଠାଇ ପଳାଇଆସିଲା। ସହରରୁ ଟିକିଏ ଦୂରକୁ ଆସିଛି କି ନାହିଁ, ବିଚରା ଲୋକଟି ବାକ୍ସ ଭିତରେ ରହି କାକୁତି ମିନତି ହୋଇ

ପିୟୁପିୟୁକୁ କହିଲା, ''ଏ ଭାଇ, ଏ ଭାଇ, ମତେ ଛାଡ଼ିଦେ।''

ପିୟୁପିୟୁ ବାକ୍ସ ଥୋଇଦେଇ ଲୋକଟି ସହିତ ସଉଦା ଆରମ୍ଭ କରିଦେଲା। ବହୁ ଅନୁନୟ ବିନୟ ପରେ ଲୋକଟି ହଜାରେ ଟଙ୍କା ଦେଇ ପିୟୁପିୟୁଠାରୁ ମୁକୁଳି ମୁହଁ ଲୁଚାଇ ସହରକୁ ପଳାଇଗଲା। ପିୟୁପିୟୁ ଟଙ୍କା ଆଣି ଗୋଟିଏ ନୂଆ ଘର ତିଆରି କରିପକାଇଲା। ତାର ଧନସମ୍ପଦ ଦେଖି ଲୋକେ ଆଚମ୍ବିତ ହୋଇଗଲେ; କାଲିର ଗରିବବାପୁଡ଼ା ଆଜି କିପରି ଧନୀ ହୋଇଗଲା, କେହି ବୁଝିପାରିଲେ ନାହିଁ। ଗାଆଁରେ ଯେତେ ମୁଖିଆ ଥିଲେ ସମସ୍ତେ ପିୟୁପିୟୁ ଘରକୁ ଯାଇ କଥାଭାଷା ହେଉ ହେଉ ସେ କହିଲା, ''ଆଜ୍ଞା, ଚମଡ଼ା ଦର ଆଜିକାଲି ଖୁବ୍ ତେଜିଛି। ମୋ ଗାଈଟା ମରିଗଲା ଯେ ଚମଡ଼ାଟି ବିକି ଦଶହଜାର ଟଙ୍କା ପାଇଗଲି। ସେହି ଟଙ୍କାରେ ଘରଦ୍ୱାର କରି ଦେଇଛି।''

ଏ କଥା ଶୁଣି ମୁଖିଆମାନେ ଆଖି ଠରାଠରି ହୋଇ ଘରକୁ ଫେରିଗଲେ ଏବଂ ରାତାରାତି ନିଜ ନିଜ ଗାଈଗୋରୁଗୁଡ଼ାକୁ ମାରିପକାଇଲେ। ସକାଳୁ ସକାଳୁ ସେ ଗାଆଁରୁ ଶଗଡ଼ ଶଗଡ଼ ଚମଡ଼ା ବିକ୍ରି ପାଇଁ ସହରର ସେହି ଚମଡ଼ା-ବେପାରୀ ଦୁଆରକୁ ବୁହାଚାଲିଲା। କିନ୍ତୁ ଦରଦାମ୍ କଷାକଷି ବେଳେ ବେପାରୀ କହିଲା, ''ଭାଇ, ମୁଁ ସେ ଲୋକଟାକୁ ଟଙ୍କା-ପଇସା କିଛି ଦେଇନାହିଁ; ଗୋଟାଏ ଡାବଲ ବାକ୍ସ ମାତ୍ର ଦେଇଛି।'' ଲୋକେ ବା କ'ଣ କରିବେ। ସାଧାରଣ ଦାମ୍‌ରେ ଚମଡ଼ାତକ ବିକ୍ରି କରିଦେଇ ଗାଆଁକୁ ଫେରିଆସିଲେ। ସମସ୍ତେ ମନେ ମନେ ପିୟୁପିୟୁ ଉପରେ ରକ୍ତଚାଉଳ ଚୋବାଉଥାନ୍ତି। ସନ୍ଧ୍ୟା ହେଉ ହେଉ ଠେଙ୍ଗା ବାଡ଼ି ଧରି ପିୟୁପିୟୁକୁ ପିଟିବାଲାଗି ସେମାନେ ଆସି ତା ଘରେ ପଶିଗଲେ। ଅବସ୍ଥା ଅସମ୍ଭାଳ ହେବ ଜାଣି ସେ ଚୁପ୍‌କିନା ବାଡ଼ିଆଡ଼େ ଲୁଚିଗଲା। ଘରେ ତ ଦୀପ ଲାଗି ନଥାଏ। ଜଣେ ଲୋକ ତା ଭାର୍ଯ୍ୟାକୁ ପିୟୁପିୟୁ ଭାବି ପଛପଟୁଆ କରି ଏପରି ମାଡ଼ ଚଢ଼ାଇଲା ଯେ, ସେ ବିଚରା ସେଇଠି ପଡ଼ି ମରିଗଲା। ଘଟଣା ଦେଖି ଲୋକେ ନିଜ ବୁଦ୍ଧିକି ନିନ୍ଦା କରି ଯେ ଯାହା ଘରକୁ ଯାଇ ଲୁଚିଗଲେ। ପିୟୁପିୟୁ ଭାର୍ଯ୍ୟାର ମରଣରେ ଦୁଃଖୀ ହେଲା ସତ; କିନ୍ତୁ ମରଣରୁ ବି ଗୋଟିଏ ଫାଇଦା ଉଠାଇବା ଲାଗି ସେ ଗୋଟିଏ ଉପାୟ କରିବସିଲା।

ସକାଳୁ ସକାଳୁ ସେ ତା ଭାର୍ଯ୍ୟାର ମୁର୍ଦ୍ଦାରକୁ ଲୁଗାପଟା ପିନ୍ଧାଇ ନେଇ ସଡ଼କ ଧାରରେ ଗୋଟିଏ ଗଛକୁ ଆଉଜାଇ ବସାଇଦେଲା ଏବଂ ତା ପାଖରେ ଗୋଟିଏ ଡାଲାରେ ଡାଲାଏ ସେଉ ଥୋଇଦେଲା। ଟିକିଏ ଦୂରରୁ ଦେଖିଲେ ଜଣେ କେହି ବସି ସେଉ ବିକୁଥିବା ପରି ଦେଖାଯାଉଥାଏ। ସେତେବେଳକୁ ସେଉ ଫଳ ବେଶି ମିଳୁ ନଥାଏ; ତେଣୁ ଦାମ୍ ଥାଏ ଖୁବ୍ ଚଢ଼ା। ଭାର୍ଯ୍ୟାକୁ ସେପରି ବସାଇ ଦେଇ ପିୟୁପିୟୁ ପାଖ ବୁଦା ପଛରେ ଲୁଚି ବସିଥାଏ; ଏ

ସମୟରେ ଜଣେ ଧନୀ ମହାଜନ ତା ଘୋଡ଼ାଗାଡ଼ି ଚଢ଼ି ସେହି ବାଟରେ ଆସିଲା। ରାସ୍ତାକଡରେ ସେଉ ଫଳ ବିକ୍ରି ହେଉଛି ଦେଖି ମହାଜନ ଫଳ କିଣିବାଲାଗି ଗାଡ଼ିରୁ ଓହ୍ଲାଇପଡ଼ି ପସରା ପାଖକୁ ମାଡ଼ିଗଲା। ଯାଇ ପଚାରିଲା, "ଆଲୋ, ସେଉ ଦର କଣ ହୋଇଛି?" କିନ୍ତୁ ମୁର୍ଦ୍ଦାରଟା ବା କି ଉତ୍ତର ଦିଅନ୍ତା! ମହାଜନ ଦୁଇ-ଚାରି ଥର ପଚାରି ସାରିବା ପରେ ବିରକ୍ତ ହୋଇ କହିଲା, "ଆଲୋ, ପସରା ମେଲେଇ ଦେଇ ଢୁଳାଉଛୁ କଣ?" —ଏହା କହି ସେ ତାକୁ ନିଦରୁ ଉଠାଇବାଲାଗି ଟିକିଏ ଠେଲିଦେଲା। ସଙ୍ଗେ ସଙ୍ଗେ ମୁର୍ଦ୍ଦାରଟା ତଳେ ଗଡ଼ିପଡ଼ିଗଲା। କ'ଣ ହେଲା ବୋଲି ମହାଜନ ଆଚମ୍ବିତ ହୋଇ ଚାହିଁଛି, ପିୟୁପିୟୁ ବୁଦା ପଛରୁ ବାହାରି ଆସି ଗର୍ଜନ କରି ଉଠିଲା, "ହଇ ହୋ, ତମର ଏଡ଼େ ବଡ଼ ବହପ, ମାରୁ ମାରୁ ମୋ ଭାର୍ଯ୍ୟାକୁ ଏପରି ପ୍ରାଣରେ ମାରିଦେଲ। ନାହିଁ, ନାହିଁ... ଇଏ କୋଉ ନ୍ୟାୟ କଥା? ମୁଁ ହାଁ ହାଁ କରୁ କରୁ ତମେ ଇମିତି ମାରିପକାଇଲ। ଚାଲ, ଆଜି ଗାଆଁ ପଞ୍ଚାୟତରେ ଏ କଥା ବିଚାରହେଉ —ନ ହେଲେ ମୁଁ ରାଜାଙ୍କ ପାଖକୁ ଯାଇ ଫେରାଦୀ ହେବି।"

ତାର ଏ ପାଟିତୁଣ୍ଡ ଶୁଣି ମହାଜନର ପିଳେହି ପାଣି! 'ଏତେ ବଡ଼ଲୋକ ହୋଇ ଗୋଟିଏ ମଣିଷ ମାରିଦେଲା' ଶୁଣିଲେ ଲୋକରେ କି ନିନ୍ଦା ନ ହେବ ଭାବି ସେ ପିୟୁପିୟୁର ଗୋଡ଼ ହାତ ଧରି କିଛି ଗୋଟାଏ ସମାଧାନ କରିଦେବାଲାଗି କାକୁତିମିନତି ହେଲା। ଶେଷକୁ ବିଚରା ପିୟୁପିୟୁକୁ ହଜାରେ ଟଙ୍କା ଓ ନିଜ ଘୋଡ଼ାଗାଡ଼ିଟି ଦେଇ ମାନମହତ ଜଗି ମୁହଁ ଲୁଚାଇ ସେଠାରୁ ପଳାଇଲା।

ସେଦିନ ଖରାବେଳେ ଗାଆଁ ଲୋକେ ଦେଖନ୍ତି ତ ଅରକ୍ଷ ପିୟୁପିୟୁ ନୂଆ ଘୋଡ଼ାଗାଡ଼ି ଚଢ଼ି ଗାଆଁରେ ବୁଲୁଛି। ତାର ସେ ବିଭବ ଦେଖି ଲୋକେ ଆଶ୍ଚର୍ଯ୍ୟ ହୋଇଗଲେ ସତ; ହେଲେ ବୁଝୁ ବୁଝୁ ଯେତେବେଳେ ସକଳ ଘଟଣା ଶୁଣିବାକୁ ପାଇଲେ ସେତେବେଳେ ତା ପଡ଼ିଶାଘର ଲୋକଙ୍କ ଈର୍ଷା ଆହୁରି ବଢ଼ିଗଲା। ସେମାନେ ତା ସୁଖଶିରୀ ଦେଖି ନ ପାରି ଦିନେ ତା ଘରେ ପଶି ତାକୁ ବାନ୍ଧିପକାଇ ଗୋଟିଏ ବସ୍ତା ଭିତରେ ପୂରାଇଦେଲେ। କହିଲେ— "ତୁ ଆମକୁ ଭଣ୍ଡି ଇମିତି ଜମିଦାରଘର କ୍ବାଇଁ ପରି ଘୋଡ଼ାଗାଡ଼ି ଚଢ଼ି ବୁଲିବୁ, ଆଉ ଆମେ ଚୁପ୍‌ହୋଇ ବସି ସବୁ ଦେଖିବୁ ନା? ତତେ ନେଇ ପାଣିରେ ବୁଡ଼େଇ ମାରିଦେଲେ ଯାଇ ଆମର ଶାନ୍ତି।" ତା ପରେ ପରେ ତାକୁ ହ୍ରଦରେ ବୁଡ଼ାଇ ମାରିଦେବା ଲାଗି ବସ୍ତାଟି ନେଇ ଗାଆଁରୁ ବାହାରିପଡ଼ିଲେ। ଏତେଦିନକେ ଦୁଷ୍ଟଟା ଧରାପଡ଼ିଛି ଜାଣି ଲୋକମାନେ ଖୁସିରେ ଚାଲିଥାନ୍ତି; ଚାଲୁ ଚାଲୁ ବାଟରେ ଗୋଟିଏ ମଦଖଟି ପଡ଼ିଲା। ସେମାନେ ପିୟୁପିୟୁ ପଶିଥିବା ବସ୍ତାଟି ଗୋଟିଏ ଗଛ ଗଣ୍ଡିରେ ବାନ୍ଧିଦେଇ ଖଟି ଭିତରେ ପଶିଗଲେ। ପିୟୁପିୟୁ ବସ୍ତା ଭିତରେ ବସି ସବୁ ଜାଣୁଥାଏ। ଟିକିଏ

ନିରୋଳାରେ ରହି ସେ ଭାବିଲା, ଏତିକିବେଳେ ଯଦି କେହି ପାଖକୁ ଆସନ୍ତା, ତେବେ ମୁଁ ଖସିଯିବାକୁ ଗୋଟିଏ ଉପାୟ କରନ୍ତି। ଏପରି ଭାବୁଛି, ଶୁଣିଲା ତା ପାଖଦେଇ ମେଁ ମେଁ କରି ଗୋଠେ ଛେଳି ଚାଲିଯାଉଛନ୍ତି। ଛେଳିଗୋଠ ଯେତେବେଳେ ଅଛି, ଛେଳିଆଳ ବି ଥିବ ଜାଣି ପିୟୁପିୟୁ ବସ୍ତାଭିତରୁ ପାଟିକରି ଉଠିଲା, ''ନା-ନା, ମୁଁ ଜମିଦାରଙ୍କ ଜ୍ୱାଇଁ ହେବିନାହିଁ। ସତ କହୁଛି, ମୁଁ ଜମିଦାରଙ୍କ ଜ୍ୱାଇଁ ହେବି ନାହିଁ।''

ବସ୍ତାଭିତରୁ କିଏ ଏପରି କହୁଛି ଶୁଣିବାଲାଗି' ଛେଳିଆଳ ସେଠାକୁ ଯାଇ ପଚାରିଲା, ''ଆରେ ଭାଇ, ତୁମେ କିଏ ଏପରି ପାଟିକରୁଛ ?'' ଛେଳିଆଳ ପାଟିଶୁଣି ପିୟୁପିୟୁ କହିଲା, ''କିଏ ଆଉ କହିବ, ମୁଁ କହୁଛି। ମୁଁ ନାହିଁ କରୁଛି, ମୋର ବାହାହେବାକୁ ମୋଟେ ଇଚ୍ଛା ନାହିଁ। ଦେଖ ହେ, ମୋତେ କେମିତି ଜବରଦସ୍ତି ଧରିନେଇ ଜମିଦାରଙ୍କ ଝିଅ ସାଙ୍ଗରେ ବାହା କରାଇଦେବାକୁ ବସିଛନ୍ତି।''

ଛେଳିଆଳଟା ଭେଣ୍ଡିଆଟାଏ। ତାର ବଡ଼ଲୋକ ହେବାକୁ ଭାରି ମନ। ସେ ଭାବିଲା, ଜମିଦାରଙ୍କ ଜ୍ୱାଇଁ ହୋଇଗଲେ ରାତାରାତି ବଡ଼ଲୋକ ହୋଇଯିବ। ତେଣୁ ସେ କହିଲା, ''ଆହେ, ମତେ ନେଇ ସେଠାରେ ବାହା କରାଇଦେଲେ, ମୁଁ ଖୁସି ହୁଅନ୍ତି।

ଏ କଥା ଶୁଣି ପିୟୁପିୟୁ କହିଲା, ''ତାହେଲେ, ଆଉ ଡେରି କରନି। ବସ୍ତା ଖୋଲି ଶୀଘ୍ର ଏ ଭିତରେ ପଶିଯାଅ।''

ବସ୍ତା ଖୋଲୁ ଖୋଲୁ ପିୟୁପିୟୁ ସେ ଭିତରୁ ବାହାରିପଡ଼ିଲା। ଛେଳିଆଳ ବସ୍ତାଭିତରେ ପଶିବାକୁ ଯାଉଛି, ପିୟୁପିୟୁ କହିଲା, ''କିନ୍ତୁ, ବିନା ଖର୍ଚ୍ଚାରେ ଏତେବଡ଼ ଘରେ ଜ୍ୱାଇଁ ହୋଇଯିବ ନା ?'' ଛେଳିଆଳ କହିଲା, ''ମୋ ଛେଳିପଲକ ନେଇଯାଅ; ମିଛରେ କାହିଁକି ମନ ଦୁଃଖ କରୁଛ ?''

ପିୟୁପିୟୁ କି ଆଉ ଡେରି କରନ୍ତା ! ଛେଳିଆଳକୁ ବସ୍ତାରେ ବାନ୍ଧିଦେଇ ସେ ଛେଳିପଲକ ଅଡ଼ାଇ ନେଇଗଲା। ଯେଉଁମାନେ ପିୟୁପିୟୁକୁ ବସ୍ତାରେ ପୂରାଇ ବୋହିନେଉଥିଲେ ସେମାନେ କିଛି ସମୟପରେ ମଦଭାଟିରୁ ଟଳିଟଳି ବାହାରିଆସିଲେ। ସେମାନେ ବସ୍ତାଟି ଟେକି ନେଉ ନେଉ କହୁଥାନ୍ତି— ''ଚାଲ ଦେଖିବୁ, ତତେ ଏଥର କିମିତି ଜମିଦାରଘର ଜ୍ୱାଇଁ କରିଦେବୁ।'' କିଛି ସମୟପରେ ସେମାନେ ଯାଇ ହ୍ରଦପାଖରେ ପହଞ୍ଚିଗଲେ ଏବଂ ବସ୍ତାଟିକୁ ପାଣିକୁ ଫୋପାଡ଼ିଦେଇ କହିଲେ, ''ଏଥର ତୋ ଚତୁରପଣିଆ ଦେଖାଉଥା।''

କିନ୍ତୁ ସେଦିନ ଉପରବେଳା ସେମାନେ ଗାଆଁକୁ ଫେରି ଦେଖିଲେ ପିୟୁପିୟୁ ଗୀତ ବୋଲି ବୋଲି ପଲେ ବଡ଼ିଆ ଛେଳି ଚରାଉଛି। ଘଟଣା ଦେଖି ସେମାନଙ୍କର ହାଲୁକା ଶୁଖିଗଲା। ଯେଉଁ ଲୋକକୁ ପାଣିରେ ବୁଡ଼ାଇ ସେମାନେ ମାରିଦେଲେ,

ସେ ଲୋକ ପଲେ ଛେଳି ଧରି କିପରି ଚରାଉଛି ତା ସେମାନେ ବୁଝିପାରିଲେ ନାହିଁ। ସନ୍ଧ୍ୟାବେଳକୁ ସମସ୍ତେ ତା ଘରେ ଯାଇ ପହଞ୍ଚି ପଚାରିଲେ, "କିରେ ପିୟୁପିୟୁ, ଏ ଆଚମ୍ବିତ କଥା କିପରି ଘଟିଲା ?"

ପିୟୁପିୟୁ କିଛି ନଜାଣିଲାପରି ପଚାରିଲା, "କେଉଁ ଆଚମ୍ବିତ କଥା ହେ ?"

—"ଆମେ ତ ତତେ ହ୍ରଦ ଭିତରେ ବୁଡ଼ାଇଦେଲୁ ! ତୁ କିପରି ଆସି ଏଠାରେ ଛେଳି ଚରାଉଛୁ ?"

—"ଓଃ ସେଇ କଥା ? ଆହେ, ତୁମେ ତ ମତେ ପାଣିକି ଫୋପାଡ଼ି ଦେଲ, ମୁଁ ପାଣିରେ ବୁଡୁବୁଡୁ ଦେଖିଲି ସେ ଭିତରେ ପଲପଲ ମେଣ୍ଢା ଛେଳି ଚରୁଛନ୍ତି। ଦେଖିଲି, ଜଣେ ଲୋକ ସେଥିରୁ ପଲେ ଛେଳି ଅଡ଼ାଇନେଉଛି। ପଚାରୁ ପଚାରୁ ସେ କହିଲା, 'ଆରେ, ତୁ ବି ପଲେ ଅଡ଼ାଇ ନେଉନୁ। ଯେଉଁମାନେ ପାଣିରେ ବୁଡ଼ିଯାଆନ୍ତି, ଦଇବ ପରା ସେମାନଙ୍କ ପାଇଁ ସେ ଛେଳି ଭିଆଇଛି।' ମୁଁ କାହିଁକି ଡେରି କରନ୍ତି ? ପଲେ ଛେଳି ଅଡ଼ାଇ ଆଣିଲି; ହେଲେ ମୁଁ ତ ଦେଖୁଛ ଦୁବଳାପତଳା ଲୋକ; ବଡ଼ ଛେଳିଙ୍କୁ ଜମାପାରିଲିନାହିଁ। ଏହି ଛୋଟିଆମୋଟିଆ ଦେଖି ପଲେ ନେଇଆସିଲି।"

ଲୋକେ କହିଲେ, "ଛୋଟିଆ କଣ କି ରେ ! ଇଏ ତ ବଢ଼ିଆ ହୋଇଛନ୍ତି। ସେଠି କଣ ଏମାନଙ୍କ ଠଉଁ ଭଲ ଛେଳି ଅଛନ୍ତି ?"

—"ଆହେ, ମଣିଷ ନିଜ ଆଖିରେ ନ ଦେଖିଲେ ପରତେ ଯିବନାହିଁ। ସତ କହୁଛି, ସେଥିରୁ ଗୋଟିଏ ଗୋଟିଏ ବୋଦା ଏମାନଙ୍କର ଚାରି ଛଅ ଗୁଣ ବଡ଼ ହେବ।"

—"ଆମେ ଗଲେ କ'ଣ ନେଇ ଆସିପାରିବୁ ?"

—"କାହିଁକି, ତମେ କଣ ମୋପରି ନିକମା ହୋଇଛ କି ? —ଶୁଣୁଛ ପରା, ଯିଏ ପାଣିରେ ପଶିବ ସିଏ ଅଡ଼ାଇଆଣିବ; ତମ ପାଇଁ କଣ ମନାହେବ ?"

ଏ ସବୁ ଶୁଣୁ ଶୁଣୁ ଗାଁଲୋକଙ୍କର ଲୋଭ ବଢ଼ିଗଲା। ସେମାନେ ରାତି ନ ପାହୁଣୁ ପିୟୁପିୟୁ ସାଙ୍ଗରେ ହ୍ରଦକୂଳକୁ ଦୌଡ଼ିଲେ। ସେତେବେଳକୁ ଆକାଶରେ ଖଣ୍ଡ ଖଣ୍ଡ ଧଳାମେଘ ଭାସି ବୁଲୁଥାଏ ଯେ ପାଣିରେ ତାର ପ୍ରତିବିମ୍ବ ପଡ଼ି କୂଳକୁ ଦେଖାଯାଉଥାଏ, ସତେ ଯେପରି ଗୁଡ଼ାଏ ବଡ଼ ବଡ଼ ଧଳା ମେଣ୍ଢା ଚାଲବୁଲ କରୁଛନ୍ତି। ସେଗୁଡ଼ାକୁ ଦେଖାଇ ପିୟୁପିୟୁ କହିଲା, "ଦେଖୁଛ, ଦେଖୁଛ, କେଡ଼େ କେଡ଼େ ମେଣ୍ଢା ! ଗୋଟେ ଗୋଟେ ଧଳା ଭାଲୁ ପରିକା ହୋଇଛନ୍ତି ପରା; ଭିତରକୁ ଗଲେ ଆହୁରି ବଡ଼ ବଡ଼ ଦେଖିବ।"

ଲୋଭରେ ଗୋଡ଼େଇଥିବା ଲୋକଙ୍କ ଆଖିକୁ ଭେଳିକି ଲାଗିଯାଇଥାଏ। ଲୋକଙ୍କୁ ସେ କଥାସବୁ ସତପରି ଲାଗିଲା। ସେମାନେ ଫକ୍‌ଫାକ୍ କରି ପାଣି ଭିତରକୁ

ଡେଇଁପଡ଼ିଲେ। ହ୍ରଦରେ ତ କମ୍ ପାଣି ନଥାଏ; ପୁଣି ବଡ଼ ମେଣ୍ଢା ଧରିବା ଆଶାରେ ସେମାନେ ଗଭୀର ଗଣ୍ଡଭିତରକୁ ଡେଇଁଥାନ୍ତି; ଆଉ କି ସେଠାରୁ ବର୍ତ୍ତନ୍ତି। ପିୟୁପିୟୁକୁ ଈର୍ଷାକରି ସେମାନେ ସମସ୍ତେ ପାଣିରେ ବୁଡ଼ିମଲେ। ଆଉ କିଛି କାଳ ଶାନ୍ତିରେ ଦିନ କଟିଯିବ ଭାବି ପିୟୁପିୟୁ ଗାଆଁକୁ ଫେରିଆସିଲା।

# ଟିକିରି ଟମ୍

ପାହାଡ଼ ତଳ ଛୋଟ ଗାଆଁଟିରେ ବୁଢ଼ାଟିଏ ବୁଢ଼ୀଟିଏ ହୋଇ ଦୁଇ ପ୍ରାଣୀ ଥାଆନ୍ତି। ବଣରୁ କାଠ କାଟି ବିକିଦେଲେ ଗୁଜୁରାଣ ମେଣ୍ଟିଯାଏ। କିନ୍ତୁ ତାଙ୍କର ପୁଅ କି ଝିଅ କିଛି ନଥାନ୍ତି। ବୁଢ଼ୀ ବଡ଼ ମନୋଦୁଃଖରେ ନିତି ଠାକୁରଙ୍କୁ କହେ, ''ହେ ପ୍ରଭୁ, ମୁଁ ଆଉ କିଛି ମାଗୁ ନାହିଁ। ମୋର ଭେଣ୍ଡାଚଣ୍ଡା ଲୋଡ଼ା ନାହିଁ, ବକଟେ ହେଉ ପଛେ ଯଦି ପୁଅଟିଏ ଦିଅନ୍ତ, ତେବେ ସବୁ ଦୁଃଖ ପାଶୋରି ଯାଆନ୍ତି।'' ବୁଢ଼ା ବି କହେ, ''ଟିକିଏ ହେଉ ନିଖିଏ ହେଉ, ପୁଅଟିଏ ଥିଲେ ମୋର ଆଉ ଚିନ୍ତା ନଥାନ୍ତା।''

ଶେଷକୁ ପ୍ରଭୁ ସେ ଦିହିଁଙ୍କ ଡାକ ଶୁଣିଲେ; ବୁଢ଼ୀର ପୁଅଟିଏ ଜନ୍ମ ହେଲା। କିନ୍ତୁ ବଡ଼ ଆଚମ୍ବିତ କଥା, ପୁଅଟି ଆଙ୍ଗୁଠି ପଗଠାରୁ ବି ବଡ଼ ହୋଇ ନଥାଏ। ବୁଢ଼ାବୁଢ଼ୀ ସେ ପୁଅକୁ ଯେତେ ଖୋଇଲେ ପେଇଲେ, ଯେତେ ଓଷଧ ମଉଷଧ କଲେ, କେଉଁଥିରେ କିଛି ହେଲାନାହିଁ। ସେ ପୁଅ ଯେଉଁ ବକଟେ ହୋଇ ଜନ୍ମହୋଇଥିଲା, ସେହି ବକଟେ ହୋଇ ରହିଗଲା। ଯାହାହେଉ, କଥାରେ ତ ଅଛି, ଯାହାର ଗୋଟିଏ ବୋଲି ପୁଅ, ତାକୁ ତା କଣା ପୁଅ ବି ପଦ୍ମଲୋଚନ। ତେଣୁ ପୁଅଟି ବୁଢ଼ାବୁଢ଼ୀଙ୍କର ଗେଲବସର ହୋଇ ବଢ଼ିଲା। ବାପମାଆ ତାକୁ ଟମ୍ ବୋଲି ନାଆଁ ଦେଇଥାନ୍ତି; କିନ୍ତୁ ଟିକିରିଟିଏ ହୋଇଥିବାରୁ ତାର ଡାକ-ନାଆଁ ହୋଇଗଲା 'ଟିକିରି ଟମ୍'।

ଟମ୍ ଟିମାଟିଏ ହେଲେ କଣ ହେଲା, ତା ବୁଦ୍ଧି କିନ୍ତୁ ଭାରି ଟାଣ। ତା ଭଳି ଚାଲାଖ ଚତୁର ପିଲା ସେ ଖଣ୍ଡମଣ୍ଡଳରେ ନଥାନ୍ତି। ଦିନେ ତା ବୁଢ଼ା ବାପ କାଠ ଆଣିବାଲାଗି ଶଗଡ଼ ନେଇ ବଣକୁ ଯିବାକୁ ବାହାରିଲା। ଶଗଡ଼ରେ ଘୋଡ଼ା ଯୋଚି ଘରୁ ବାହାରିବାବେଳକୁ ଡେରି ହୋଇଯିବ ଦେଖି ବୁଢ଼ା କହିଲା, ''କିଏ ଯଦି ଶଗଡ଼ଟା ଅଡ଼େଇ ଆଣନ୍ତା, ତେବେ ମୁଁ ଟିକିଏ ଆଗତୁରା ବଣକୁ ଚାଲିଯାଇ କାଠ ଦି'ଟା କାଟିପକାନ୍ତି।

ବାପ କଥା ଶୁଣି ଟିକିରି ଟମ୍ କହିଲା, ''ସେଥିକୁ ଚିନ୍ତା କର ନାହିଁ ବାପା, ମୁଁ ଶଗଡ଼ ଅଡ଼େଇ ନେବି; ତମେ ଯାଇ ବଣରେ ପାଇନଥିବ, ମୁଁ ନେଇ ଶଗଡ଼ ପହଞ୍ଚାଇ ଦେବି।''

କାଠୁରିଆ ବୁଢ଼ା ହସି ହସି କହିଲା, ''ଆରେ ଧନ, ତୁ ତ ଏଡ଼ିକି ଟିକିଏ ହୋଇଛୁ ଯେ ଲଗାମ ଧରିବାକୁ ତୋ ହାତ ପାଇବନାହିଁ; ତୁ ଶଗଡ଼ ଅଡ଼େଇବୁ କିପରି ?''

ଟମ୍ କହିଲା, ''କହିଲି ପରା ତୁମେ ମୋଟେ ଚିନ୍ତା କରନାହିଁ; ମାଆ ଯଦି ଖାଲି ଶଗଡ଼ରେ ଘୋଡ଼ା ଯୋଡ଼ିଦେବ, ତେଣିକି ମୁଁ ମୋ କାମ କରିବି। ସିଧା ତ ଯାଇ ଘୋଡ଼ା କାନ ଭିତରେ ବସିଯିବି; ମୁଁ ଯେଣିକି କହିବି ଘୋଡ଼ା ତେଣିକି ଯିବ; ଲଗାମ ଧରିବା ଦରକାର ପଡ଼ିବ ନାହିଁ।''

''ହଉ, ଏ କାମକୁ ତୁ କେମିତିକା ପାରୁଛୁ, ଦେଖିବା'' କହି ବୁଢ଼ା ଆଗରେ ଜଙ୍ଗଲକୁ ଚାଲିଗଲା। ଶଗଡ଼ ନେବାବେଳ ହେବାରୁ ଟମ୍‌ର ମାଆ ଘୋଡ଼ାକୁ ଖୋଲପେଇ ଶଗଡ଼ରେ ଯୋଚ଼ିଦେଲା। ତା'ପରେ ଟମ୍‌କୁ ନେଇ ଘୋଡ଼ା କାନ ଭିତରେ ବସାଇଦେଲା। ଟମ୍ ଘୋଡ଼ା କାନ ଭିତରେ ଆରାମରେ ବସି ଘୋଡ଼ାକୁ, ''ହେ ବାଆଁକୁ ଚାଲ, ହେ ଫୁର୍ତ୍ତି ଚାଲ, ହେ ଫୁର୍ତ୍ତି ଚାଲ''– ଏପରି କହି ଶଗଡ଼ ଅଡ଼େଇ ନେଲା। ବାଟରେ ଗଡ଼ାଣି ପଡ଼ିଲେ, ''ଆସ୍ତେ ଆସ୍ତେ'' ବୋଲି ଘୋଡ଼ାକୁ କହିଦେଉଥାଏ। ସେ ଏପରି ଶଗଡ଼ ଅଡ଼େଇ ଚାଲିଛି, ବାଟରେ ଦୁଇ ଜଣ ବେପାରୀ ଭେଟିଲେ। ଶଗଡ଼ିଆ ଘୋଡ଼ାକୁ ଅଡ଼ାଇବା ଡାକ ସେମାନେ ଶୁଣିପାରିଲେ; କିନ୍ତୁ ଶଗଡ଼ରେ କେହି ଶଗଡ଼ିଆ ନଥିବା ଦେଖି ଆଶ୍ଚର୍ଯ୍ୟ ହୋଇଗଲେ। ଏ ଭିତରେ କିଛି ଗୋଟିଏ ଗୁମର କଥା ରହିଛି ଭାବି ସେମାନେ ଶଗଡ଼ ପଛେ ପଛେ ଚାଲିଥାନ୍ତି। ଶଗଡ଼ ଯାଇ ଟମ୍‌ର ବାପା ଯେଉଁଠି କାଠ କାଟୁଥିଲା, ସେଇଠି ଅଟକିଗଲା। ଶଗଡ଼ ଅଟକୁ ଅଟକୁ ଟିକିରି ଟମ୍ ଡାକ ପକାଇଲା, ''ବାପା, ବାପା, ଦେଖିଲ, ମୁଁ ଠିକ୍ ସମୟରେ ଆସି ପହଞ୍ଚଗଲି। ଘୋଡ଼ାକୁ ବାନ୍ଧିଦେଇ, ମତେ ଘୋଡ଼ା କାନରୁ ବାହାର କରିଦିଅ।''

ଠିକ୍ ସମୟରେ ଶଗଡ଼ ଆସିଗଲା ଦେଖି ବୁଢ଼ା ଗାଡ଼ିରୁ ଘୋଡ଼ା ଫିଟାଇ ଗୋଟିଏ ଗଛମୂଳେ ବାନ୍ଧିଦେଲା। ତା ପରେ ଘୋଡ଼ା କାନ ଭିତରୁ ଟମ୍‌କୁ ବାହାର କରି ଆଣି ଘାସ ଉପରେ ବସାଇ ଅଣଲା ଆଉଁସା କରିବାକୁ ଲାଗିଲା। ଏତେବେଳକେ କିଏ ଶଗଡ଼ ଅଡ଼େଇ ଆଣୁଥିଲା ତାହା ଦେଖିବାକୁ ଯାଇ ବେପାରୀ ଦୁଇଜଣ ତାଜୁବ ହୋଇଗଲେ।

ଟିକିରି ଟମ୍‌କୁ ଦେଖି ସେମାନଙ୍କ ଭିତରୁ ଜଣେ ବେପାରୀ ଆଉ ଜଣକୁ ଟିକିଏ ଦୂରକୁ ଡାକିନେଇ କହିଲେ, ''ଭାଇ, ଆମେ ଯଦି ସେ ଟିକିରି ଟୋକାଟିକୁ

କିଣି ନିଅନ୍ତେ, ତେବେ ତାକୁ ସହର ବଜାରରେ ଦେଖାଇ ଢେର୍ ପଇସା ରୋଜଗାର କରିପାରନ୍ତେ।''

ଆଉ ଜଣକ ଏ ପ୍ରସ୍ତାବରେ ରାଜିହୋଇଗଲା। ତେଣୁ ଦିହେଁ ଆସି କାଠୁରିଆ ବୁଢ଼ାକୁ କହିଲେ, ''ମଉସା, ଏ ପିଲାଟିକୁ ଆମକୁ ଦେଇଦିଅ। ଇଏ ତ ଦିବାଲା ପଡନ୍ତା ହୋଇ ଏଡ଼ିକି ଟିକିଏ ହୋଇଛି; ତୁମେ ଗରିବ ଲୋକ, ପଇସା କେଉଁଠୁ ପାଇବ ଯେ ୟା' ପିଛା ବଇଦ କବିରାଜ ଲଗାଇବ। ବରଂ ଆମେ ନେଇଗଲେ ବଇଦ ଦେଖାଇ ତାକୁ ଟିକିଏ ବଳୁଆ କରିଦେଇ ପାରିବୁ।''

ଏକଥା ଶୁଣି ବୁଢ଼ା କହିଲା, ''ଆହେ, କି କଥା କହୁଛ। ମୋର ସେଇ ଖଣ୍ଡିକ; ସେ ମୋ ଏକୋଇରବଳା, ନୟନପିତୁଳା— ଛାର ଟଙ୍କାଲୋଭରେ ମୁଁ ତାକୁ ବିକିଦେବି, ନା !!''

ବେପାରୀମାନେ କହିଲେ, ''ଆହେ, ଟଙ୍କା-ପଇସାରେ ମନ ନଥିଲେ ସୁନା ରୁପା ଦେବା। କେତେ ସୁନା ନେବ କହୁନା ?''

ବୁଢ଼ା କହିଲା, ''ଯାହାକୁ ମୋ ରକ୍ତ-ମାଂସ ଦେଇ ଗଢ଼ିଛି, ଦୁନିଆଯାକର ସୁନା ଦେଲେ ବି ତାକୁ ମୁଁ ଦେଇପାରିବି ନାହିଁ।''

କିନ୍ତୁ ତାକୁ ନେଇ ମୂଲଚାଲ ଲାଗିଛି ଦେଖି ଟିକିରି ଟମ୍ ତା' ବାପାଙ୍କ ପକେଟ ଧରି କାନ୍ଧଉପରକୁ ଉଠିଗଲା ଏବଂ ବୁଢ଼ା କାନପାଖରେ ଚୁପ୍‌ଚୁପ୍ କରି କହିଦେଲା, ''ବାପା, ଏ ବେପାରୀଙ୍କଠାରୁ ସୁନା ରୁପା ନେଇ ମତେ ବିକିଦିଅ; ଦେଖିବ, ମୁଁ ଦିନେ ଓଳିଏ ଭିତରେ ଏଙ୍କୁ ଚିତା କାଟିଦେଇ ଘରକୁ ଫେରିଆସିବି।''

ପୁଅ-କଥାରେ ବୁଢ଼ାର ବିଶ୍ୱାସ ଆସିଗଲା। ସେ ଥଳିଏ ସୁନା ନେଇ ବେପାରୀଙ୍କ ହାତକୁ ଟମ୍‌କୁ ବଢ଼ାଇ ଦେଲା। ଟମ୍ ଆସି ହାତରେ ବସୁ ବସୁ ଜଣେ ବେପାରୀ ତାକୁ ପଚାରିଲା, ''କିରେ ଟିକିରି ଟମ୍, ତୁ କେଉଁଠି ବସିଲେ ସୁବିଧାରେ ବସିପାରିବୁ ?''

ଟିକିରି ଟମ୍ କହିଲା, ''ବାବୁ, ମତେ ତୁମ ପଗଡ଼ି ଉପରେ ବସାଇ ଦିଅ ଯେ ତୁମେ ତୁମର ଚାଲିଥିବ, ମୁଁ ମୋର ସେ ଉପରେ ବୁଲିଚାଲି ଚାରିଆଡ଼କୁ ଚାହିଁ-ଚାହିଁକା ଗାଆଁଗଣ୍ଡା ଦେଖୁଥିବି।''

ବେପାରୀ ରାଜିହୋଇ ଟମ୍‌କୁ ପଗଡ଼ି ଉପରେ ବସାଇଦେଲା। ଟମ୍‌କୁ ଧରି ଦୁଇ ବେପାରୀ ଚାଲିଛନ୍ତି, ବାଟରେ ବେଳ ବୁଡ଼ିଗଲା। ଅନ୍ଧାର ମାଡ଼ିଆସୁଥାଏ, ଏତିକିବେଳେ ଟମ୍ ପଗଡ଼ିଉପରୁ ପାଟିକଲା, ''ବାବୁ! ମୁଁ ଆଉ ଏ ଉପରେ ବସିପାରୁନାହିଁ। ମତେ ଟିକିଏ ତଳକୁ ଓହ୍ଲାଇ ଦିଅ; ମୁଁ ପରିସ୍ରା କରିବି।''

ଟମ୍‌ର ଡାକ ଶୁଣି ବେପାରୀ ତାକୁ ତଳକୁ ଓହ୍ଲାଇଦେଇ ରାସ୍ତାକରରେ ବସାଇଦେଲା। ଟିକିରି ଟମ୍ ରାସ୍ତାପାଖ ବିଲର ଗୋଟିଏ ମାଟିଚେଲା ତଳେ

ବସି ପରିସ୍ରା କରିବା ବାହାନା କଲା। ଏତିକିବେଳେ ସେ ଦେଖିଲା, ସେପାଖରେ ଗୋଟିଏ ବିଲମାଳିଆ ମୂଷା ଗାତ କରିଛି। ସେ ସଙ୍ଗେ ସଙ୍ଗେ ସେହି ଗାତ ଭିତରେ ପଶିଯାଇ ବେପାରୀମାନଙ୍କୁ ଶୁଣାଇ ଡାକ ଛାଡ଼ିଲା, "ବେପାରୀ ଭାଇ, ଯାଉଛି ହେ, ମତେ ଆଉ ଖୋଜିବ ନାହିଁ।"

ଟିକିରି ଟମ୍ ଚମ୍ପଟ ଛୁ ଦେଲା ଦେଖି ବେପାରୀ ଦୁଇଜଣ ବାଡ଼ି ଧରି ମୂଷାଗାତ ପାଖକୁ ଦୌଡ଼ିଆସିଲେ। ଝାପ୍‌ସା ଅନ୍ଧାର ଭିତରେ ସେମାନେ ଟମ୍‌କୁ ଖୋଜୁ ଖୋଜୁ ଟମ୍ ଗାତର ଆହୁରି ଭିତରକୁ ଚାଲିଗଲା। ବେପାରୀ ଦୁଇଜଣ ଗାତଭିତରେ ବାଡ଼ି ପୂରାଇ କେତେ କେଞ୍ଚିଲେ; କିନ୍ତୁ ଟମ୍ ଜମା ବାହାରିଲା ନାହିଁ। ଶେଷକୁ ବେପାରୀ ଦୁଇଜଣ ପାଠଟାଏ ଶିଖିଲେ ଭାବି କାନ-ମୁଣ୍ଡ ଆଉଁସି ସେଠାରୁ ପଳାଇଗଲେ। ସେମାନେ ଚାଲିଯିବା ପରେ ଟମ୍ ମୂଷାଗାତଭିତରୁ ବାହାରିପଡ଼ି ରାତିଟା କେଉଁଠି କଟାଇବ ବୋଲି ସ୍ଥାନ ଖୋଜିବୁଲିଲା। ନୂଆ ହୋଇ ଚାଷ କରାଯାଇଥିବାରୁ ସେ ବିଲରେ ଟେଳା ଟେଳା ମାଟି ପଡ଼ିଥାଏ। ସେ ଅନ୍ଧାରରେ ଏ ଟେଳାରୁ ଡେଇଁ ସେ ଟେଳାରେ ହାବୁଡୁଥାଏ। ଏପରି ପଡ଼ିଉଠି ରହିବା ସ୍ଥାନ ଖୋଜୁ ଖୋଜୁ ଟିକିରି ଟମ୍‌କୁ ଗୋଟିଏ ବଡ଼ ଗେଣ୍ଡାଖୋଳ ମିଳିଗଲା। ଗେଣ୍ଡାଖୋଳ ଭିତରେ ପଶିଯାଇ ଟିକିଏ ଆରାମରେ ବସିପଡ଼ିଲା! ଭାବିଲା, 'ଯାହାହେଉ, ଏତେବେଳକେ ମଣିଷ ଟିକିଏ ନିଦକରେ ନିଃଶ୍ୱାସ ମାରିବାକୁ ପାଇଲା।'

ଗେଣ୍ଡାଖୋଳ ଭିତରେ ବସି ଟିକିରି ଟମ୍ ଢୁଳୋଉଛି, ଏ ସମୟରେ ଶୁଣିଲା କେତେ ଜଣ ଲୋକ ସେହି ପାଖଦେଇ କଥାଭାଷା ହୋଇ ଚାଲିଛନ୍ତି। ସେ ଭିତରୁ ଜଣେ କହୁଛି, "ଏତେ ଲୋକଙ୍କ ଘରେ ପଶି ଏତେ ଜିନିଷ ମାରିଆଣିଥାଇଁ; ହେଲେ ଜମିଦାର ଘରେ ପଶିବାକୁ କାହିଁକି ସାହସ ପାଉନାହିଁ?"

ଆଉ ଜଣେ କହୁଛି, "ଝିଅ ବାହାଘରକୁ ଜମିଦାର ବହୁତ ସୁନା ରୁପା ଜିନିଷ ଗଢ଼ାଇ ରଖିଛି; ଯଦି ତା ଘରେ ପଶିପାରନ୍ତେ, ତେବେ ବଢ଼ିଆ ଫସଲଟିଏ ଉତାରି ଆଣନ୍ତେ। ଯିବା?"

ତୃତୀୟ ଜଣକ କହିଲା, "ଆରେ, ତା ଘରେ ଲୁହା ଝରକା, ଲୁହା କବାଟ; ସେଗୁଡ଼ାକ ଭାଙ୍ଗିବା କେମିତି ଯେ ଘର ଭିତରେ ପଶିବା? ଆମ ଭିତରେ କିଏ ଏ କାମକୁ ପାରିବ, କହ ତ?"

ଏ କଥା ଶୁଣି ଟିକିରି ଟମ୍ ଜାଣିଗଲା ଯେ ସେଗୁଡ଼ାକ ଦଳେ ଚୋର। ସେ ଗେଣ୍ଡାଖୋଳ ଭିତରୁ ପାଟିକରି ଉଠିଲା, "ମୁଁ ପାରିବି, ମୁଁ ପାରିବି, ମତେ ସାଙ୍ଗରେ ନିଅ।"

ତା ପାଟି ଶୁଣି ଚୋରଗୁଡ଼ାକ ଚମକି ଉଠିଲେ। କିଏ ସେ ଏପରି କହୁଛି ବୋଲି ସେମାନେ ଅବାକ୍ ହୋଇ ଚାହିଁଛନ୍ତି, ଟିକିରି ଟମ୍ ପୁଣି ଥରେ ପାଟିକରି

ଉଠିଲା, "ଆରେ ଭାଇ, ମତେ ନିଅ; ମୁଁ ଜମିଦାର ଘରେ ପଶିଯାଇ ପାରିବି।"

ଏଥର ଜଣେ ଚୋର ସାହସ କରି ପଚାରିଲା, "ଆରେ ତୁ କିଏ? ଅଛୁ କେଉଁଠି?"

ଟମ୍ କହିଲା, "ବିଲମଝିକୁ ଆସ; ମୁଁ ଏ ମାଟି ଟେଳା ପାଖରେ ଅଛି।" ଏପରି କହି ସେ ଗେଣ୍ଡାଖୋଳ ଭିତରୁ ବାହାରିଆସି ଗୋଟିଏ ମାଟିଟେଳା ଉପରେ ଚଢ଼ିଗଲା। ଚୋରମାନେ ଆସି ତାକୁ ଦେଖି ହେଉ ହେଉ ହସିଉଠିଲେ। କହିଲେ, "ହଇ ରେ, ତୁ ମଣିଷ ବୋଲି ଆଙ୍ଗୁଠି ପବରେ ପବେ ହୋଇଛୁ; କହୁଛୁ କଣ ନା, ଲୁହାକବାଟ ଭାଙ୍ଗି ଜମିଦାର ଘରେ ପଶିଯିବୁ!!"

ଟମ୍ କହିଲା, "ତୁମେ ତ ଖାଲି ଭଙ୍ଗାରୁଜା କାମ ଜାଣ, ଆଉ କରିବ କ'ଣ? ମୁଁ ବିନା ଭଙ୍ଗାରୁଜାରେ ଘରେ ପଶିଯିବି।"

ସମସ୍ତେ ପଚାରିଲେ, "କିମିତି?"

—"ଆହେ, ଦି'ଛଡ଼ ମଝିରେ ଯେଉଁ ଫାଙ୍କ ଥିବ, ସେଥିରେ ମୁଁ କଣ ଗଳିଯାଇ ପାରିବି ନାହିଁ?"

ସବୁ ଚୋର ଟମ୍ ବୁଦ୍ଧିକୁ ତାରିଫ୍ କରିବାକୁ ଲାଗିଲେ। ପ୍ରସ୍ତାବ ରହିଲା ଯେ ଟମ୍ ଝରକାଛଡ଼ ଫାଙ୍କଦେଇ ଘର ଭିତରେ ପଶିବ; ଘର ଭିତରୁ ଜିନିଷ ଆଣି ବାହାରେ ଠିଆହୋଇଥିବା ଚୋରଙ୍କ ହାତକୁ ବଢ଼ାଇଦେବ। ତାକୁ କାନ୍ଧରେ ବସାଇ ଚୋରମାନେ ଯାଇ ଜମିଦାର ଘର ପାଖରେ ପହଞ୍ଚଗଲେ। ଟମ୍ ସଙ୍ଗେ ସଙ୍ଗେ ଘର ଭିତରେ ପଶିଯାଇ ଗୋଟିଏ ପାଟିକରି ପଚାରିଲା, "ଆହେ, ଏ ଭିତରେ ଯାହା ଯାହା ଜିନିଷ ଅଛି, ସେ ସବୁ ବଢ଼ାଇଦେବି ନା କ'ଣ?"

ତାର ସେ ପାଟି ଶୁଣି ଚୋରଗୁଡ଼ାକ ପ୍ରମାଦ ଗଣିଲେ। ଯଦି ଘରଲୋକେ ଉଠିପଡ଼ିବେ, ତେବେ ସର୍ବନାଶ! ଚୋର ସର୍ଦ୍ଦାର ତାକୁ ଠାରିଦେଇ କହିଲା, "ଆରେ, ଏଡ଼େ ପାଟି କରି କଥା କହନା; ଚୁପ୍ ଚୁପ୍ କହ।" କିନ୍ତୁ ଟମ୍ କିଛି ନ ବୁଝିପାରିବାର ଛଳନା କରି କହିଲା, "ଆହେ, ଏ ଭିତରେ ତ କେତେ ନାହିଁ କେତେ ସୁନା ରୁପା ଜିନିଷ ଅଛି; ଏଥିରୁ ତମେ କେତେ ନେବ କହ, ସେତିକି ବଢ଼ାଇଦେବି।"

ଏ ପାଟି ଶୁଣୁ ଶୁଣୁ ଧରାପଡ଼ିଯିବା ଭୟରେ ଚୋରଗୁଡ଼ାକ ସେଠାରୁ ଭାଗିପଳାଇ ଖଣ୍ଡେ ଦୂରରେ ଯାଇ ଲୁଚିରହିଲେ। ଦେଖିଲେ, ଟିକିରି ଟମ୍ ସେମାନଙ୍କ ସହିତ ଥଟ୍ଟା ଖେଳୁଛି। ଯାହାହେଉ, କିଛି ସମୟ ପରେ ସେମାନେ ପୁଣି ସେହି ଝରକା ପାଖକୁ ଆସି ଟମ୍‌କୁ ଚୁପ୍‌ଚୁପ୍ କରି କହିଲେ, "ଦେଖ, ଏ ଥଟ୍ଟା-ତମାସା ଛାଡ଼। ଯାହା ପାଉଛୁ, ବାହାରକୁ ବଢ଼ାଇଦେ।"

ଟମ୍ ପୁଣି ପାଟିକରି କହିଲା, "ଓଃ, ଏହି କଥା, ହେଇଟି ଧର, ଧର;

ରୁପା ଥାଳିପଟେ ବଢ଼େଇଲି ଧର।''

ତା ପାଟି ଶୁଣି ଘରର ଚାକର କେତେବେଳୁ ଚେଇଁସାରିଥାଏ। ରୁପା ଥାଳିଆଟା ବଢ଼ାଇ ଦେଲାଣି ଦେଖି ସେ, ''କିଏ ସେ ବେ ବଦ୍‌ମାସ!'' କହି ଧଡ଼ାଧଡ଼ କବାଟ ଖୋଲିଦେଲା। ଚାକରଟା ଠେଙ୍ଗା ଉଞ୍ଚାଇ ବାହାରିଆସିବା ପୂର୍ବରୁ ଚୋରମାନେ ଖସି ଚାଲିଗଲେ। ଚାକର 'ଚୋର, ଚୋର' ବୋଲି ପାଟି କରୁ କରୁ ଘରଲୋକ ଦୀପ ଜାଳି, ମଶାଲ-ଦିହୁଡ଼ି ଧରି ଚୋର ଖୋଜିବା ଆରମ୍ଭ କରିଦେଲେ।

ଚୋରମାନେ ତ ଖସି ଚାଲିଗଲେଣି; ଏମାନେ ଆଉ ଧରନ୍ତେ କାହାକୁ। ଏପଟେ ଟମ୍ ଘର ଭିତରେ ତକିଆ ତଳେ ଲୁଚିଗଲା ଯେ ତାକୁ ବି ଦେଖିହେଲା ନାହିଁ। ଘରଲୋକ ଚାକରକୁ ଗାଳିଗୁଲଜ କରି କହିଲେ, ''ମିଛଟାରେ ତୁ ଇମିତି ହୁରି ପକାଇଦେଲୁ ନା।'' ଚାକର କିନ୍ତୁ ନିଜ କାନକୁ ଅବିଶ୍ୱାସ କରିପାରିଲାନାହିଁ। ଯାହାହେଉ ଘରେ ସମସ୍ତେ ପୁଣି ଥରେ ଶୋଇପଡ଼ିବା ପରେ ଟମ୍ ତକିଆ ତଳୁ ବାହାରି ସିଧା ବାରିପଟେ କୁଟାଗଦାକୁ ଚାଲିଗଲା। କଅଁଳିଆ କୁଟାଗଦା ଉପରେ ବସିପଡ଼ି ଭାବିଲା, 'ଯାହାହେଉ ରାତିଟା ଆରାମରେ ଶୋଇବା ଲାଗି ନିରାପଦ ଜାଗାଟିଏ ମିଳିଗଲା। ପାହାନ୍ତିଆଯାଏ ଶୋଇବି; ତାପରେ ଉଠି ଗାଆଁକୁ ପଳାଇବି!'

କିନ୍ତୁ ଭାଗ୍ୟ ତ ସବୁବେଳେ ସଳଖ ଯାଏନି। ମଣିଷ ଘଡ଼ିଘଡ଼ିକେ ବିପଦରେ ପଡ଼େ। ରାତି ପାହି ସକାଳ ହୋଇନାହିଁ; ଜମିଦାରଙ୍କ ଚାକର ନିଦରୁ ଉଠି ଭାବିଲା, ଆଜି ସଅଳ ସଅଳ ଗାଈଙ୍କି ଖୋଇପେଇ ଦେଲେ ଦୁଧ ଦୂହିଁପକାଇବି। ଏପରି ଭାବି ସେ ଯାଇ କୁଟାଗଦାରୁ ଗୋଛାଏ କୁଟା ଆଣି ଗାଈଙ୍କ ମୁହଁରେ ଦେଲା; କିନ୍ତୁ କୁଟା ସାଙ୍ଗରେ ଟିକିରି ଟମ୍‌କୁ ବି ସେ ଉଠାଇ ଆଣିଥାଏ– ଏକଥା ଚାକର ଯେପରି ଜାଣିନଥାଏ, ଟିକିରି ଟମ୍ ବି ସେପରି ଜାଣିନଥାଏ। ଗାଈ କୁଟା ଖାଉ ଖାଉ ଟିକିରି ଟମ୍‌କୁ ଗିଳିଦେଲା। ଟମ୍‌ର ନିଦ ଯାଇ ଭାଙ୍ଗିଲା ଗାଈପାଟି ଭିତରେ। ସେ ଭିତରେ ନିଦ ଭାଙ୍ଗୁ ଭାଙ୍ଗୁ ଟମ୍ ଭାବିଲା, ''ଆରେ, ମୁଁ ଏ ଅଟାଳକ ଭିତରକୁ କିପରି ପଶିଆସିଲି? କିନ୍ତୁ କିଛି ସମୟ ଭିତରେ ବିପଦଟା ବୁଝିଗଲା। ଗାଈ ତାକୁ ଜିଭରେ ଠେଲି ଯେତେ କଳ ଆଡ଼କୁ ନେଉଥାଏ; ସେ ସେତେ ଠେଲିହୋଇ ଗାଈ ତୋଟି ଆଡ଼କୁ ଚାଲିଯାଉଥାଏ। ଶେଷକୁ ସେ ଯାଇ ଗାଈପେଟରେ ପଶିଗଲା। ଉଃ, କି ଅନ୍ଧାର ସେ ଭିତରଟା!! ଟମ୍ ଭାବିଲା, 'ବୋଧହୁଏ ଲୋକଗୁଡ଼ାକ ଏ ଘରଟା ତିଆରି କଲାବେଳେ ଝରକା ଗଢ଼ିବାକୁ ଭୁଲିଗଲେ; ଏ ଅନ୍ଧାରରେ ମଣିଷ ବଡ଼ ଅଡୁଆରେ ପଡ଼ିଲା!' ସେ ଏପରି ଭାବୁଥାଏ, ତେଣେ ଗାଈ ଖାଉଥିବା କୁଟାସବୁ ଆସି ପେଟରେ ପଶୁଥାଏ। ଏପରି ପଶୁପଶୁ ଟମ୍‌କୁ ବସିବା ପାଇଁ ବି ଆଉ ସ୍ଥାନ ଟିକିଏ ମିଳିଲା ନାହିଁ।

ସେ ପାଟିକରି ଉଠିଲା; "ସେତିକି ଥାଉ, ଆଉ କୁଟା ଦିଅନା।"

ଠିକ୍ ସେତିକିବେଳକୁ ଚାକରଟା ଗାଈ ଦୁହୁଁଥିଲା। ଗାଈ ପେଟ ଭିତରେ ରହି ଟମ୍ ଏପରି ପାଟି କରୁ କରୁ ସେ ତାହା ଶୁଣିବାକୁ ପାଇ କହିଲା, "ଏଁ! କ'ଣ ଗାଈପାଟିରୁ କଥା ବାହାରିଲାଣି।" ରାତିରେ ତ ସେ ଟମ୍ ପାଟିରୁ କଥା ଶୁଣିଥିଲା; କିନ୍ତୁ କାହାରିକୁ ଦେଖିବାକୁ ନ ପାଇ ସେ ଭାବିଥିଲା ନିଶ୍ଚୟ ଭୂତ କି ଡାଆଣୀ ଆସି ଘରେ ପଶିଛି। ବର୍ତ୍ତମାନ ଗାଈପାଟିରୁ ଠିକ୍ ସେହି ସ୍ୱରରେ କଥା ଶୁଣି ସେ ଧରିନେଲା ଗାଈଟାକୁ ବୋଧହୁଏ ଭୂତ ଧରିଛି। ଟମ୍ ସେପଟେ ପୁଣି ଥରେ ପାଟିକରି କହିଦେଲା, "ସେତିକି ଥାଉ, ସେତିକି ଥାଉ, ଆଉ କୁଟା ଦିଅନା।" ଚାକରଟା କି ଆଉ ଥୟ ଧରି ରହେ। ସେ ଏପରି ଚମକି ଉଠିଲା ଯେ ବସିଥିବା ଜାଗାରୁ ଉଠି ପଡୁ ପଡୁ ତଳେ ଗଡ଼ିପଡ଼ିଲା। ଦୁଧଘଡ଼ିଟା ତଳେ ପଡ଼ି ଦୁଧତକ ଗଡ଼ିହୋଇଗଲା। ତା ପଡ଼ିଯିବା ଶବ୍ଦ ଶୁଣି ଜମିଦାର ଓ ତାଙ୍କ ସ୍ତ୍ରୀ ଗୁହାଳକୁ ଦୌଡ଼ିଆସିଲେ। ପଚାରିଲେ, "କିରେ, କଥା କ'ଣ? ଇମିତି ପଡ଼ିଗଲୁ କାହିଁକି?

ଚାକର କହିଲା, "ହଜୁର, ଏ ଗାଈ କଥା କହୁଛି— ମତେ ଡର ଲାଗୁଛି; ଆକୁ ଭୂତ ଲାଗିଛି କି କ'ଣ!"

ଜମିଦାର କହିଲେ, "ଧେତ୍..., ଗାଈ କେଉଁଠି କଥା କହିଲାଣି!! ତତେ ଗଲାରାତିଠୁଁ ଗୋଟେ ଭେଳିକି ଧରିଛି ଯେ ତୁ ଏପରି ହେଉଛୁ।"

କିନ୍ତୁ ଠିକ୍ ସେତିକିବେଳେ ଟମ୍ ପୁଣି କହିଦେଲା, "ସେତିକି ଥାଉ, ସେତିକି ଥାଉ; ଆଉ କୁଟା ଦିଅନା।"

ଗାଈଠାରୁ ଏପରି କଥା ଶୁଣି ଜମିଦାର ବି ଡରିଗଲେ। କହିଲେ, "ଏପରି ଗାଈ ପୋଷିବାର ନୁହେଁ; ଦିଅ, କଂସେଇକୁ ବିକିଦିଅ।" ସଙ୍ଗେ ସଙ୍ଗେ କଂସେଇ ଆସି ଗାଈ କିଣିନେଲା! କିଣି ନେଉ ନେଉ ସେ ଗାଈଟିକୁ ମାରି ମାଂସବିକା ଆରମ୍ଭ କରିଦେଲା ଏବଂ ଗାଈର ଅନ୍ତପୁଟାଯାକ କୁକୁର ବିଲୁଆ ଖାଆନ୍ତୁ ବୋଲି ବାହାରେ ଫୋପାଡ଼ିଦେଲା। ଟିକିରି ଟମ୍ ସେ ଭିତରେ ରହିଯାଇଥାଏ। ବାହାରେ ପଡ଼ି ଅନ୍ତପୁଟା ଭିତରୁ ମୁଣ୍ଡ କାଢ଼ିବାକୁ ବସିଛି ଏ ସମୟରେ ଗୋଟିଏ ଭୋକିଲା ଗଧିଆ ଆସି ଗୋଟିକଯାକ ଅନ୍ତପୁଟା ଗିଳିଦେଲା। ଟିକିରି ଟମ୍ ବି ତା ସହିତ ଯାଇ ଗଧିଆ ପେଟରେ ପଶିଗଲା। ତଥାପି ମନରୁ ସାହସ ନ ହରାଇ ସେ ଭାବିଲା, 'ଗଧିଆ ହେଲେ କ'ଣ ହେଲା; ଖୁସୀଗପ କରିବାକୁ ଅମଙ୍ଗ ହେବନାହିଁ।" ଗଧିଆ ବଣଆଡ଼େ ଚାଲିଥାଏ, ପେଟଭିତରେ ଥାଇ ଟମ୍ ଡାକଛାଡ଼ିଲା, "ଗଧିଆ ଭାଇ, ତୁ ଏ ଯେଉଁ ଅନ୍ତପୁଟା ଖାଇଲୁ, ଯା'ଠାରୁ ଢେର୍ ଭଲ ଭଲ ମାଲ୍ ଗୋଟିଏ ସ୍ଥାନରେ ମିଳିବ; ସେଠିକି ଯିବୁ କି?"

ଗଧିଆ ଭୋକ ତ ସହଜେ ମେଣ୍ଟେ ନାହିଁ। ସେ ଆତୁର ହୋଇ ପଚାରିଲା, "କେଉଁଠି, କେଉଁଠି ରେ ଭାଇ?" ସଙ୍ଗେ ସଙ୍ଗେ ଟମ୍ ନିଜ ଗାଆଁ, ସାହି, ଘର, ବର୍ଣ୍ଣନା କରି କହିଲା, "ଏ ଯେଉଁ ଘର କଥା କହିଲି, ସେଠିକି ଚାଲ୍;– ସେ ଘରର ବାରିପଟ ନଳାଟା ଖୁବ୍ ବଡ଼। ତୁ ସେ ନଳାରେ ପଶି କାନ୍ଥ ଆରପଟେ ମୁଣ୍ଡ ଟେକି ଦେଉ ଦେଉ ରୋଷାଇଘର ଦୁଆରମୁହଁରେ ପହଞ୍ଚିଯିବୁ। ସେଠି ଯେଉଁ ଖାନା ମିଳିବ, ତୁ କ'ଣ, ତୋ ଚଉଦପୁରୁଷରେ କେହି ଖାଇନଥିବେ।"

ଗଧିଆକୁ ଆଉ ଦୋହରେଇବାକୁ ପଡ଼ିଲାନାହିଁ; ସେ ସିଧା ଯାଇ ଟିକିରି ଟମ୍ ଘର ବାରିପଟ ନଳାରେ ଗଳି ରୋଷାଇଘର ପାଖରେ ପହଞ୍ଚିଗଲା। ସେ ରୋଷାଇଘରେ କବାଟ ନଥାଏ। ଗଧିଆ ଘରଭିତରେ ପଶି ମନତୋଷକରି ଚଉକସିଆ ଖୁବ୍ ପେଟେ ଗିଳିପକାଇଲା। ଖାଇପିଇ ସାରି ଗଧିଆ ମନଖୁସିରେ ନଳା ଭିତରେ ପଶି ପଳାଇବାକୁ ମୁଣ୍ଡ ଗଳାଇଦିଏ ତ, ନଳାଭିତରେ ପେଟଟା ଲାଗିଗଲା। ସେ ଏତେ ଗିଳିଥାଏ ଯେ ପେଟ ଫୁଲି ମୋଟା ହୋଇଯାଇଥାଏ; ଆଉ ସେ ନଳାଭିତରେ ଗଳି ନପାରି ଛଟରପଟର ହେବାକୁ ଲାଗିଲା। ଟିକିରି ଟମ୍ ତ ଏହି ମଉକା ଖୋଜୁଥିଲା; ଗଧିଆ ଯାଇ ନପାରି ରହିଗଲା ଜାଣି ସେ ତା ପେଟଭିତରେ ରହି ଏପରି ଗୋଟିଏ ହୁରି ଛାଡ଼ିଲା ଯେ, ସେ ହୁରିରେ ତା ବାପାମାଆଙ୍କ ନିଦ ଭାଙ୍ଗିଗଲା। ସାଇପଡ଼ିଶା ଲୋକେ ବି ଦୌଡ଼ିଆସିଲେ। ଘରେ ଗଧିଆ ପଶିଛି ଦେଖିବା ପରେ ସେମାନେ କି ଆଉ ଚୁପ୍ ହୋଇ ରହନ୍ତେ? ଠେଙ୍ଗା, ବାଉଁଶ, କୁରାଢ଼ି, କଣ୍ଟୁରି, ଯାହାକୁ ଯାହା ମିଳିଲା, ଉଠାଇ ଆଣି ଗଧିଆକୁ ନିସ୍ତୁକ ଛେଚିଁଗଲେ। ଏତେ ଲୋକଙ୍କ ପାହାର ପଡ଼ିବା ପରେ ସେ ଆଉ ବଞ୍ଚନ୍ତା! ଗଧିଆ ମରି ପଡୁ ପଡୁ ଟିକିରି ଟମ୍ ପାଟିକରି ଉଠିଲା, "ବାପା, ମୁଁ ଗଧିଆ ପେଟରେ ଅଛି, ମୁଁ ଗଧିଆ ପେଟରେ ଅଛି।"

ପୁଅ-ଡାକ ଶୁଣୁ ଶୁଣୁ ବାପା ବାରିଦେଲା। ସଙ୍ଗେ ସଙ୍ଗେ ଛୁରୀ କଟୁରି ଲଗାଇ ଗଧିଆ ପେଟ ଚିରିପକାଇଲା। ପୁଅକୁ ଦେଖୁ ଦେଖୁ ସେ ତାକୁ କାନ୍ଧ ଉପରକୁ ଉଠାଇନେଇ କହିଲା, "ଓଃ, ମୋର କି ଭାଗ୍ୟ ସତେ! ଆଉ ଥରେ ମୋ ପୁଅ ମୋ ଘରକୁ ଆସିବ, ଏ ବିଶ୍ୱାସ ମୋର ନଥିଲା।"

ଟିକିରି ଟମ୍ ନିଜର ସବୁ ଘଟଣା କହିସାରିବା ପରେ ସାହିଲୋକେ ତା ବୁଦ୍ଧିକି ତାରିଫ୍ କରି ଘରକୁ ଫେରିଗଲେ। ତା ମାଆ କହିଲା, "ମୋର ଆହା ପରା ପୁଅକୁ ଛାର ଟଙ୍କା-ପଇସା ଲୋଭରେ ଆଉ କେବେ ବିକିଦେବି ନାହିଁ।"

—

# ଚଷାଝିଅର ବୁଦ୍ଧି

ଚଷାବୁଢ଼ାଟିଏ ଥାଏ । ସେ ବିଚ଼ରାର କିଛି ଜମିବାଡ଼ି ନଥାଏ । ବୁଢ଼ାର ଗଧଟିଏ ଥାଏ । ବଣରୁ କାଠ ହାଣି ଗଧ ଉପରେ ଲଦି ନେଇଆସେ । କାଠ ବିକି ଯାହା ଦି'ପଇସା ପାଏ, ସେତିକି । ହଁ, ଜାଲ ଖଣ୍ଡିଏ ରଖିଥାଏ ଯେ କେବେ କିମିତି ମାଛ ଦିଓଟି ଧରିଆଣେ । ଘରେ ବାପ ଝିଅ ହୋଇ ଦୁଇ ପ୍ରାଣୀ କୁଟୁମ୍ବ; ତଥାପି ଦିହେଁ ଦି'ବେଳା ଦି'ମୁଠା ଖାଇବାକୁ ପାଆନ୍ତି ନାହିଁ । ଦିନେ ଝିଅ ବାପାକୁ କହିଲା, ''ବାପା, ପାହାଡ଼ ତଳେ କେତେ ପଡ଼ିଆ ଜମି ପଡ଼ିଛି । ତୁମେ ଯାଅ, ରାଜାଙ୍କୁ ଦୁଃଖ ଜଣାଇ ସେଥିରୁ ଜମି ଖଣ୍ଡିଏ ମାଗ; ଲଟାବୁଦା ସଫାକରି ସେଥିରୁ ଜମି ଖଣ୍ଡିଏ ଉଠିଆ କରିଦେଲେ ଆମ ଦୁଃଖ ରହିବ ନାହିଁ ।''

ଝିଅ-କଥା ମାନି ଦିନେ ବାପବୁଢ଼ା ଯାଇ ରାଜାଙ୍କ ଦରବାରରେ ଠିଆ ହେଲା; କରପତ୍ର ଯୋଡ଼ି ଦୁଃଖ ଜଣାଇଲା । ସେ ତ ମନୁଆ ରାଜା । ବୁଢ଼ା କଥାରେ ସେ ତରଳିଗଲେ । ସଙ୍ଗେ ସଙ୍ଗେ ମନ୍ତ୍ରୀଙ୍କୁ ଡକାଇ ତାକୁ ଖଣ୍ଡିଏ ପାହାଡ଼ତଳିଆ ଜମି ଦେଇଦେଲେ । ତା ବାସିଦିନଠାରୁ ବୁଢ଼ା ଓ ତା ଝିଅ ଲଟାବୁଦା ଉପାଡ଼ି ଜମି ତିଆରି କରିବାରେ ଲାଗିଗଲେ । ଦିନକର କଥା । ବୁଢ଼ା ଗୋଟିଏ ବୁଦା ଉପାଡୁଛି, ସେ ଭିତରୁ ଗୋଟିଏ ସୁନାର ଶିଳ ବାହାରିପଡ଼ିଲା । ବୁଢ଼ା ତ ପ୍ରଥମେ ସେଇଟି ସୁନା ବୋଲି ଚିହ୍ନିପାରୁ ନଥିଲା; କିନ୍ତୁ ଝିଅ ଯେତେବେଳେ ସେଇଟି ଠିକ୍ ସୁନା ବୋଲି ଚିହ୍ନିଦେଲା, ସେତେବେଳେ ବୁଢ଼ା କହିଲା, ''ମହାରାଜା ମତେ ଦୟାକରି ଏ ଜମିଖଣ୍ଡିକ ଦେଇଛନ୍ତି, ମୁଁ ତ ତାଙ୍କୁ ଆଉ କିଛି ଦେଇପାରିବିନାହିଁ । ଯାଉଛି, ଏହି ସୁନାଶିଳଟି ଭେଟିଦେଇ ଆସିବି ଯେ ସେ କାଳକାଳକୁ ମୋ ଉପରେ ଖୁସି ହୋଇଯିବେ ।''

କିନ୍ତୁ ବାପ-କଥା ଶୁଣି ଝିଅ କହିଲା, ''ବାପା, ସେ କଥା କର ନାହିଁ । ଶିଳଟି ଆମେ ପାଇଲେ; ଆମେ ଭୋଗ କରିବା । ରାଜାଙ୍କୁ ଭେଟି ଦେଲେ ସେଥିରୁ ନାନା ଅନର୍ଥ ବାହାରିବ; ତୁମେ ଭଲ ଖୋଜୁଛ, ସେଥିରୁ ମନ୍ଦ ଫଳିଯିବ ।''

ବୁଢ଼ା କହିଲା, ''ଆଲୋ, ରାଜାଙ୍କୁ ଏତେ ବଡ଼ ସମ୍ପତ୍ତି ଭେଟି ଦେବି; ସେ ସନ୍ତୁଷ୍ଟ ହୋଇ ମତେ ଆହୁରି କିଛି ଜମିବାଡ଼ି ଖଞ୍ଜିଦେଇପାରନ୍ତି– ଅନର୍ଥ କାହିଁକି ବାହାରିବ ?''

ଝିଅ କହିଲା, ''ଆହେ ବାପା, ତୁମେ ଶିଳଟି ଭେଟି ଦେଲେ, ସେ ନିଶ୍ଚୟ ଶିଳପୁଆଟି କାହିଁ ବୋଲି ପଚାରିବେ । ତୁମେ ଶିଳପୁଆଟି ଦେଇପାରିବ ?''

—"ମୁଁ କହିବି, ମଣିମା, ମତେ ଯେତିକି ମିଳିଲା ସେତିକି ଆଣିଦେଲି।"

—"ରାଜା ତୁମ କଥା ମୋଟେ ବିଶ୍ୱାସ କରିବେ ନାହିଁ। କହିବେ, ତୁମେ ମିଛ କହୁଛ; କାହିଁକି ନା ଶିଳଟା ଯେତେବେଳେ ଥିଲା, ତା ପାଖରେ ଶିଳପୁଆଟି ବି ଥିବା କଥା। —ଶେଷକୁ ଏଇଆ ହେବ। ତୁମେ ଭଲ ପାଇଁ ଯାଇଥିବ; ରାଜା ମନ୍ଦ ବୁଝିବେ।"

କିନ୍ତୁ ଚଷା ବୁଢ଼ା ଝିଅ କଥା ମାନିଲା ନାହିଁ। ସେ ସୁନାଶିଳଟି ନେଇ ରାଜାଙ୍କ ଦରବାରକୁ ଚାଲିଗଲା। ରାଜା ପାତ୍ରମନ୍ତ୍ରୀଙ୍କୁ ନେଇ ବସିଥାନ୍ତି। ବୁଢ଼ା ଯାଇ ତାଙ୍କୁ ସୁନାଶିଳଟି ଭେଟି ଦେଇଦେଲା। ରାଜା ଖୁସି ହୋଇ ପଚାରିଲେ, "ବାଃ, ଭଲ ଚିଜ୍‌ଟିଏ ଆଣିଦେଲୁ! କିନ୍ତୁ ଖାଲି ଶିଳରେ କଣ ହେବ? ତାର ପୁଆଟି କାହିଁ?"

ବୁଢ଼ା କରପତ୍ର ଯୋଡ଼ି ଜଣାଇଲା, "ମଣିମା, ଛାମୁ ଯେଉଁ ଜମି ଖଣ୍ଡିକ ଦେଇଛନ୍ତି ସେଥିରୁ ଗୋଟିଏ ବୁଦା ଟାଡୁ ଟାଡୁ ଏ ଶିଳଟି ପାଇଗଲି; ସେ ପାଖରେ ତ କାହିଁ ପୁଆ ନଥିଲା।"

ମନ୍ତ୍ରୀ ମୁଚୁକୁନ୍ଦ ହସ ହସି ଦେଇ କହିଲେ, "ଆରେ ବାୟା, ପୁଆ ନ ଥାଇ କେଉଁଠି ଶିଳ ଥାଇପାରେ? ମଣିମା କେଡ଼େ ବଡ଼ ଦୟାଳୁ ନ ହୋଇଥିବାରୁ ତତେ ମାଗଣାରେ ଖଣ୍ଡିଏ ଜମି ଦେଇଦେଲେ! ତୁ ପୁଣି ତାଙ୍କରି ଆଗରେ ମିଛ କହୁଛୁ? ଆରେ, ଜମିରେ ଯାହା ଫଳିବ ସେଥିରେ ତୋର ଭାଗ ଅଛି; ତା ବୋଲି ଜମି ଭିତରୁ ଯାହା ବାହାରିବ, ସେଥିକୁ ବି ତୁ ଭାଗ ରଖୁଛୁ? ଏ କିଛି ଭଲ କଥା ନୁହେଁ— ଶୀଘ୍ର ଯାଇ ଶିଳପୁଆଟି ନେଇଆ।"

ବୁଢ଼ା ଶିଳପୁଆ ପାଇନାହିଁ ବୋଲି ରାଣ-ନିୟମ ପକାଇ ଯେତେ କହିଲେ ବି ରାଜା କି ମନ୍ତ୍ରୀ କେହି ତା କଥା ବିଶ୍ୱାସ କଲେ ନାହିଁ। ଶେଷକୁ ରାଜା ଖପପା ହୋଇ କହିଲେ, "ଏଇଟା ନିମକହାରାମ ମିଛୁଆଟାଏ। ଏ ତ ଆମକୁ ମିଛ କହି ଭଣ୍ଡୁଛି, ଆନ ଲୋକଙ୍କୁ କି କି ନ କରୁଥିବ!! ଏଇଟାକୁ କଏଦିଖାନାରେ ପକାଇଦିଅ; ସେଇଠି ପଡ଼ିଲେ ବୁଦ୍ଧି ଆସିବ।"

ରାଜାଙ୍କ ଆଦେଶ ପାଳିବାକୁ ତ ସିପାହିମାନେ ଚାହିଁବସିଥାନ୍ତି; ଛାମୁଙ୍କ ମୁହଁରୁ ଏକଥା ବାହାରିବାକ୍ଷଣି ସେମାନେ ବୁଢ଼ାକୁ ଟାଣିଦେଇ କଏଦିଖାନାରେ ଠୁଙ୍କିଦେଲେ। ବିଚରା କପାଳକୁ ନିନ୍ଦି ନିନ୍ଦି ସେ ଭିତରେ ଗୁଡ଼ାଏ କାନ୍ଦିଲା। ହେଲେ, ତା କାନ୍ଦ ଶୁଣୁଛି କିଏ ସେ? ଏପଟେ ରାଜା ସୁନାଶିଳଟି ପାଇବାପରେ ତା ଶିଳପୁଆଟି କିପରି ପାଇବେ, ସେ ଚିନ୍ତା କରୁଥାନ୍ତି। ତାଙ୍କର ପୂରା ବିଶ୍ୱାସ ଥାଏ ଯେ ବୁଢ଼ାହିଁ ଶିଳପୁଆଟି ଲୁଚାଇ ରଖିଛି; କଏଦିଖାନାରେ ପଡ଼ି ଦି'ଚାରି ଦିନ କଷ୍ଟ ପାଇଗଲେ ବଳେ ସତ କଥା କହିଦେବ। ତେଣୁ ସେ କଏଦିଖାନା

ଜଗୁଆଳକୁ କହିଲେ, "ଆରେ, ସେ ବୁଢ଼ାକୁ ଖାଇବାକୁ ଦେଲାବେଳେ ତା ମନକଥା କଣ ବୁଝି ମତେ ଖବର ଦେଉଥିବୁ।"

କଏଦିମାନଙ୍କୁ ସବୁଦିନ ଶୁଖିଲା ରୁଟି ଆଉ ବାସି ତରକାରି ଖାଇବାକୁ ଦିଆଯାଏ। ଜଗୁଆଳ ବୁଢ଼ା ପାଇଁ ତରକାରି ବାଢ଼ି ଦେଇ ସବୁଦିନ ପଚାରେ, "ଆରେ, କଥାଟା ଲୁଚାଇ ଲାଭ କ'ଣ? ସତ କହିଥିଲେ ଏ ଦଶା ଭୋଗନ୍ତୁ ନା?" କିନ୍ତୁ ସବୁଦିନ ବୁଢ଼ା କହେ, "ଆହା, ମୁଁ ଯଦି ମୋ ଝିଅ-କଥା ମାନିଥାନ୍ତି, ତେବେ ଏ ଦଶା ଭୋଗି ନଥାନ୍ତି।" ବୁଢ଼ାଠାରୁ ଏ ଉତ୍ତର ଶୁଣି ଜଗୁଆଳ ଆସି ସବୁଦିନ ରାଜାଙ୍କୁ ଏ କଥା ଜଣାଇ ଦିଏ। ଚାରି-ଛଅ ଦିନଯାଏଁ ବୁଢ଼ାଠାରୁ ସେହି ଏକା ଉତ୍ତର ଶୁଣି ଦିନେ ରାଜା ବୁଢ଼ାକୁ ପାଖକୁ ଡକାଇଲେ। ପଚାରିଲେ, "କିରେ, ତୋ ଝିଅ କ'ଣ କହିଥିଲା କି?" ବୁଢ଼ା ରାଜାଙ୍କ ଆଗରେ ଝିଅ କହିଥିବା କଥାଟି କହିଦେଲା। ରାଜା ଏଥର ବୁଢ଼ା ଝିଅକୁ ପାଖକୁ ଡକାଇ ପଚାରିଲେ, "ତୁମ ବାପା ମୋ ପାଖକୁ ସୁନା ଶିଳ ଆଣିବାବେଳେ, ତୁମେ ତାକୁ କଣ କହିଥିଲ?"

ଚଷା ଝିଅ ସେ କହିଥିବା ବିଷୟ ପୁଣି କହିଗଲା। ରାଜା ବାପ ଓ ଝିଅ ଦିହିଁଙ୍କ କଥାରେ ମେଳଥିବା ଦେଖି ଜାଣିଗଲେ ଯେ ବୁଢ଼ା ସତରେ ଶିଳପୁଆଟି ପାଇନାହିଁ। ତେଣୁ ସେ ତାକୁ ନିର୍ଦ୍ଦୋଷ ବୋଲି ଖଲାସ କରିଦେଲେ। ପୁଣି ଚଷାଝିଅକୁ ବି ପ୍ରଶଂସା ନକରି ରହିପାରିଲେ ନାହିଁ। ତା ବୁଦ୍ଧି ଦେଖି ଏତେ ଖୁସି ହୋଇଗଲେ ଯେ, କହିଲେ, "ତୁମେ ଯଦି ସତରେ ଏତେ ବୁଦ୍ଧିଆ, ମୁଁ ତୁମକୁ ଗୋଟିଏ ପହଳି ପଚାରିବି; ଯଦି ତା ଅର୍ଥ ଧରି କାମ କରିପାରିବ, ତେବେ ମୁଁ ତୁମକୁ ମୋ ପାଟରାଣୀ କରିନେବି।"

ଚଷାଝିଅ କହିଲା, "ଛାମୁ ଆଗ ପହଳିଟି କହନ୍ତୁ, ତା'ପରେ ମୁଁ ମୋ ବୁଦ୍ଧି ଖଟାଇବି।'

ରାଜା ପହଳି କଲେ –

"ଦେହରେ ନ ଥାଇ ଲୁଗାପଟା ଦେହ ଫୁଙ୍ଗୁଳା ରହିବ ନାହିଁ,
ପାଦରେ ନ ଚାଲି ଗାଡ଼ି ଘୋଡ଼ା ବିନା ପଳାଇ ଆସିବ ଧାଇଁ,
ବାଟ ଧରିବନି ଅବାଟେ ଯିବନି ଏପରି ଆସିଲେ ଜାଣି
ବୁଦ୍ଧିମତୀ ତୁମେ ହୋଇବାକୁ ଯୋଗ୍ୟ ମୋ ରାଜ୍ୟର ପାଟରାଣୀ।"

ଚଷାଝିଅ କହିଲା, "ଠିକ୍ ଅଛି, ମୁଁ ମଣିମାଙ୍କ ପାଖକୁ ଠିକ୍ ସେପରି ଚାଲିଆସିବି।"

ନଅରରୁ ଫେରି ଚଷାଝିଅ ନିଜ ଘରେ ଦେହରୁ ଲୁଗାପଟା ଖୋଲିଦେଇ ତା ବାପାଙ୍କ ମାଛଧରା ଜାଲଟିକୁ ଚାରି-ଛଅ ପରସ୍ତକରି ଦେହରେ ଗୁଡ଼ାଇଦେଲା।

ଫଳରେ ସେ ଲୁଗାପଟା ନ ପିନ୍ଧି ବି ଫୁଙ୍ଗୁଳା ରହିଲା ନାହିଁ। ଏଥର ସେ ତାଙ୍କ ଗଧଟିକୁ ଅଣ୍ଡଳା ଆଉଁସା କରି ତା ଲାଞ୍ଜରେ ଝୁଲି ପଡ଼ିଲା। ଗୋଟିଏ ହାତରେ ଗଧ ଲାଞ୍ଜ ଧରି ତଳେ ଲାଗ-ନଲାଗ ହୋଇ ଝୁଲିଥାଏ ଯେ କେବଳ ପାଦ ଆଙ୍ଗୁଠିମାନ ତଳେ ବାଜୁଥାଏ, ଆଉ ହାତରେ ଖଣ୍ଡିଏ ପାଞ୍ଚଣ ଧରି ସେ ଗଧକୁ ରାଜାଙ୍କ ନଅର ଆଡ଼କୁ ଅଡ଼ାଇଦେଲା। ଫଳରେ ସେ ପାଦରେ ଚାଲିଲା ନାହିଁ କି ଗାଡ଼ି-ଘୋଡ଼ାରେ ବସିଲା ନାହିଁ, ଅଥଚ ନଅର ଆଡ଼କୁ ଗଧ ସଙ୍ଗରେ ଆଗେଇ ଚାଲିଲା। ପୁଣି ଗଧଟିକୁ ସେ ଏପରି ଚଲାଇଲା ଯେ ଗଧ ସଡ଼କରେ ଗଲା ନାହିଁ କି ସଡ଼କ ବାହାରକୁ ଗଲାନାହିଁ, ଚାଲିଲା ଶଗଡ଼ ଗୁଳାରେ ଗୁଳାରେ। ଗାଉଁଲି ରାସ୍ତାରେ ତ ଶଗଡ଼ଗୁଳା ଅତି ଗାତ ଗାତ ହୋଇଯାଇଥାଏ; ତେଣୁ ସେଥିରେ ମଣିଷ ଚାଲନ୍ତି ନାହିଁ। ଏପରି ଭାବରେ ଯେତେବେଳେ ସେ ଯାଇ ନଅର ଦୁଆରେ ପହଞ୍ଚିଯାଏ, ସେତେବେଳେ ରାଜା ତା ଉପରେ ସନ୍ତୁଷ୍ଟ ହୋଇଗଲେ। ପୁରୋହିତଙ୍କୁ ଡକାଇ ସେ ତାକୁ ସେହିଦିନ ବାହା ହୋଇଗଲେ ଏବଂ ନିଜ ବଚନ ରଖି ତାକୁ ନିଜର ପାଟରାଣୀ କରିନେଲେ।

କେତେ ପାଟରାଣୀ ହେଲେ କଣ ହେଲା, ଚଷାଝିଅ ଗରିବ ଘରର ଝିଅ। ଦୁଃଖୀ-ରଙ୍କିଙ୍କ ହାରିଗୁହାରି ବୁଝେ। ବେଳ ପଡ଼ିଲେ ରାଜାଙ୍କୁ ବୁଦ୍ଧି-ଅକଲ ଶିଖାଏ। ଫଳରେ ସେ ରାଜା-ରାଣୀ ଯେପରି ସୁଖରେ ରହିଲେ, ପ୍ରଜାଏ ସେପରି ସୁଖରେ ରହିଲେ। ଏପରି କେତେ କାଳ [illegible] ପରେ ଦିନେ କଣ ହୋଇଛି ନା, ରାଜା ତାଙ୍କ ଚାନ୍ଦମାରି ପଡ଼ିଆରେ ସୈନ୍ୟମାନଙ୍କୁ ତାଲିମ ଦେଉଥାନ୍ତି ଯେ, ତାହା ଦେଖିବା ଲାଗି ପଡ଼ିଆ [illegible]ଖରେ ଗୁଡ଼ାଏ ଲୋକ ରୁଣ୍ଡ ହୋଇଥାନ୍ତି। କେତେଜଣ ଗାଉଁଲି ଲୋକ [illegible]ଣରୁ କାଠ ଶଗଡ଼ ନେଇ ଆସୁ ଆସୁ ସେ ପାଖରେ ଅଟକିଗଲେ। କାହା ଶଗଡ଼ରେ ବଳଦ ତ କାହା ଶଗଡ଼ରେ ଘୋଡ଼ା ଯୋଚା ହୋଇଥାନ୍ତି। ବୋଝେଇ ଶଗଡ଼ ଧରି ଠିଆ ହେଲେ ଜନ୍ତୁଗୁଡ଼ାକୁ ବାଧିବ ବୋଲି ଶଗଡ଼ିଆମାନେ ଶଗଡ଼ ଫିଟାଇ ଦେଇ ଜନ୍ତୁଙ୍କୁ ସେ ପାଖରେ ଚରିବାକୁ ଛାଡ଼ିଦେଲେ। ଏ ଭିତରେ କଣ ହେଲା ନା, ଜଣେ ଶଗଡ଼ିଆର ଗୋଟିଏ ଘୋଡ଼ୀ ଦଶମାସ ଗର୍ଭ ହୋଇଥାଏ ଯେ, ସେ ସେତିକିବେଳକୁ ପ୍ରସବବେଦନା ପାଇଲା। ଏପଟ ସେପଟ ହେଉ ହେଉ ଘୋଡ଼ୀଟି ଯାଇ ଆଉ ଜଣେ ଶଗଡ଼ିଆର ଶଗଡ଼ ଚକରେ ବନ୍ଧା ହୋଇଥିବା ଦୁଇଟି ବଳଦଙ୍କ ମଝିରେ ଶୋଇପଡ଼ି ଗୋଟିଏ ଅଣ୍ଡିରା ଛୁଆ ଜନ୍ମ କରିଦେଲା।

କିଛି ସମୟ ପରେ ଯେତେବେଳେ ଶଗଡ଼ିଆମାନେ ଶଗଡ଼ ଯୋଚିବାକୁ ଆସନ୍ତି, ସେତେବେଳେ ଘୋଡ଼ୀ ମାଲିକ ଶଗଡ଼ିଆ ତା ଘୋଡ଼ୀ ଜନ୍ମ କରିଛି ଦେଖି ଖୁସିରେ କହିପକାଇଲା, ''ଯା' ହେଉ, ମୋ ଘୋଡ଼ୀଟା ଆଜି ଜନମ

କରିଦେଲା । ମୋ ଶାଳକୁ ଆଉ ଗୋଟିଏ ଘୋଡ଼ା ହୋଇଗଲା ।'' କିନ୍ତୁ ଏ କଥା ଶୁଣି ବଳଦମାଲିକ ଶଗଡ଼ିଆ କହିଲା, ''କାହା ଘୋଡ଼ାରେ ? ସେ ଛୁଆଟାକୁ ପରା ମୋ ବଳଦ ଜନମ କରିଛି; ତୋର ବୋଲି କଣ କହୁଛୁ ?'' ଚାହୁଁ ଚାହୁଁ ଦିହିଁଙ୍କ ଭିତରେ ଯୁକ୍ତିତର୍କ ଚାଲି କଳିଗୋଳ ଆରମ୍ଭ ହୋଇଗଲା । କିନ୍ତୁ କଳିଗୋଳରେ କି କଥା ତୁଟେ ? ଶେଷକୁ ଦିହେଁ ଯାଇ ରାଜାଙ୍କ ପାଖରେ ଫେରାଦୀ ହେଲେ । ରାଜା ତ ଚାନ୍ଦମାରି ପଡ଼ିଆରୁ ହାଲିଆ ହୋଇ ଫେରିଥାନ୍ତି; ସେ ଏତେ ଗଭୀରକୁ ମୁଣ୍ଡ ନ ପୂରାଇ ପଚାରିଦେଲେ, ''ଆରେ ଘୋଡ଼ାଛୁଆଟା କେଉଁଠି ଜନ୍ମ ହୋଇ ପଡ଼ିଥିଲା ?''

ବଳଦବାଲା ଶଗଡ଼ିଆ କହିଲା, ''ମଣିମା, ସେ ଛୁଆଟି ଠିକ୍ ମୋ ଦି' ବଳଦଙ୍କ ମଝିରେ ଜନ୍ମହୋଇ ପଡ଼ିଥିଲା ।''

ରାଜା କହିଲେ, ''ତା'ହେଲେ ତ ସେଇଟା ତୋର । ଏତେ କଳିଗୋଳ କରୁଛ କାହିଁକି ? —ଯାଅ, ଯାଅ; ଗାଆଁକୁ ପଳାଅ ।''

ରାଜାଙ୍କ ପାଟିରୁ ଏ କଥା ବାହାରୁ ବାହାରୁ ବଳଦବାଲା ଶଗଡ଼ିଆ ଘୋଡ଼ାଛୁଆଟି ନେଇ ମନଖୁସିରେ ଗାଆଁକୁ ପଳାଇଗଲା । ଆର ଶଗଡ଼ିଆ ବିଚରା ରାଜାଙ୍କର ଏ ନ୍ୟାୟ ଶୁଣି କପାଳରେ ହାତ ମାରିଲା । ରାଜା ତ ଏପରି ଅବିଚାର କଲେ; ସେ ଆଉ କହିବ କାହାକୁ !! ବିଚରା ମନୋଦୁଃଖରେ ବୁଲୁଛି, ଲୋକଙ୍କଠାରୁ ଶୁଣିଲା ଯେ ରାଜାଙ୍କ ପାଟରାଣୀ ଭାରି ବୁଦ୍ଧିମତୀ; ତାଙ୍କୁ କହିଲେ ସେ ଠିକ୍ ନ୍ୟାୟ ଦେବେ । ଏକଥା ଶୁଣି ଶଗଡ଼ିଆ ମନରେ ଟିକିଏ ଦମ୍ଭ ଆସିଲା । ସେ ଯାଇ ପାଟରାଣୀଙ୍କୁ ଦେଖାକରି ସବୁକଥା ଜଣାଇଲା । କହିଲା, ''ମାଆ, ତୁମେ ଯଦି ନ ବୁଝିବ, ତେବେ ଆଉ କେହି ବୁଝିବେ ନାହିଁ । ଜାଣିବି, ମୋ କପାଳ ମନ୍ଦ ।''

ପାଟରାଣୀ କହିଲେ, ''ମୁଁ ଯାହା କହିବି, ତୁ ଯଦି କାଲି ସକାଳୁ ଠିକ୍ ତାହା କରିବୁ, ତେବେ ତୁ ନ୍ୟାୟ ପାଇବୁ । କିନ୍ତୁ, ହୁସିଆର, ମହାରାଜା ତତେ ଯେତେ ଯାହା କରନ୍ତୁ ପଛେ, ଏ ବୁଦ୍ଧି ତତେ ମୁଁ ବତାଇଲି ବୋଲି ମୋତେ କହିବୁ ନାହିଁ ।''

ଶଗଡ଼ିଆ ପାଟରାଣୀଙ୍କ କଥାରେ ହଁ ଭରିଲା । ତେଣୁ ପାଟରାଣୀ ତାକୁ ଗୋଟିଏ ବୁଦ୍ଧି ବତାଇଦେଇ ପଠାଇଦେଲେ । ତା ପରଦିନ ସକାଳ କଥା— ରାଜା ପାଟଘୋଡ଼ା ଚଢ଼ି ବୁଲି ବାହାରିଛନ୍ତି, ଦେଖିଲେ ସେ ଶଗଡ଼ିଆଟି ମାଛ ଧରିବା ପାଇଁ ଶୁଖିଲା ସଡ଼କ ଉପରେ ଜାଲ ପକାଉଛି; ସତେ ଯେପରି ମାଛ ପଡ଼ିଗଲେ ସେପରି ଜାଲ ଟାଣି ଆଣୁଛି । ତାର ଏ ଅପୂର୍ବ କାମ ଦେଖି ରାଜା ଘୋଡ଼ାରୁ ଓହ୍ଲାଇପଡ଼ିଲେ । ଆଶ୍ଚର୍ଯ୍ୟ ହୋଇ କିଛି ସମୟ ଚାହିଁବା ପରେ ସେ ପଚାରିଲେ, ''ତୁ କାଲି ଯେଉଁ କଳିଗୋଳ ନେଇ ମୋ ପାଖକୁ ଆସିଥିଲୁ, ସେହି ଶଗଡ଼ିଆଟି ?''

ଶଗଡ଼ିଆ କହିଲା, "ହଁ, ମଣିମା !"

ରାଜା ପଚାରିଲେ, "ଏ ଶୁଖିଲା ସଡ଼କରେ ଜାଲ ପକାଇ ମାଛ ଧରୁଛୁ, ନା ଆଉ କଣ କରୁଛୁ ?"

ଶଗଡ଼ିଆ କହିଲା, "ମାଛ ଧରୁଛି, ମଣିମା !"

ରାଜା କହିଲେ, "ଆରେ ମୂର୍ଖ, ଶୁଖିଲା ସଡ଼କରେ ମାଛ ଅଛନ୍ତି ଯେ, ଧରୁଛୁ ?"

ଶଗଡ଼ିଆ କହିଲା, "ମଣିମାଙ୍କ ରାଜ୍ୟରେ ତ ବଳଦ ଘୋଡ଼ାଛୁଆ ଜନ୍ମ କରୁଛି; ଶୁଖିଲା ସଡ଼କରେ ମାଛ ନ ରହିବେ କାହିଁକି ?"

କଥାଟି ରାଜାଙ୍କ ମରମ ଭେଦକଲା। ସେ ବୁଝିଗଲେ ଯେ ଗତଦିନ ସେ ଯେଉଁ ରାୟ ଦେଇଥିଲେ, ତାହା ଅନ୍ୟାୟ। ଶଗଡ଼ିଆ ବିଚରା ତ ମୁହଁ ଉପରେ ଅନ୍ୟାୟ ବୋଲି କହିପାରିଲା ନାହିଁ– ତାଙ୍କୁ ଅପମାନ ଦେବାପାଇଁ ଏ ଉପାୟ ଧରିଛି। ସେ ସଙ୍ଗେ ସଙ୍ଗେ ନିଜ ଭୁଲ ସୁଧାରି ପକାଇଲେ। ଚାର ପଠାଇ ଘୋଡ଼ା ମାଲିକକୁ ଘୋଡ଼ାଛୁଆଟି ଦିଆଇଦେଲେ। କିନ୍ତୁ ସେ ଭାବିଲେ ଗାଉଁଲି ଶଗଡ଼ିଆ ମୁଣ୍ଡରେ କଦାପି ଏଭଳି ବୁଦ୍ଧି ପଶିନାହିଁ; ତାକୁ ନିଶ୍ଚୟ କେହି ଏ କଥା ଶିଖାଇଦେଇଛି। ତେଣୁ ସେ ଶଗଡ଼ିଆକୁ ଧରିଆଣି ପଚାରିଲେ "ଶଗଡ଼ିଆ, ସତ କହ, ଏ ବୁଦ୍ଧି ତତେ କିଏ ଶିଖାଇଲା ??"

ଶଗଡ଼ିଆ କହିଲା, "ମଣିମା ! ଏ ମୋ ନିଜ ବୁଦ୍ଧି; କେହି ଶିଖାଇ ନାହାନ୍ତି।"

ରାଜା କିନ୍ତୁ ତା କଥାରେ ପରତେ ଗଲେ ନାହିଁ। ସେ ତା'ଠାରୁ ସତକଥାଟି ଆଦାୟ କରିବା ଲାଗି ଗୁଡ଼େଇ-ତୁଡ଼େଇ ପଚାରିବାକୁ ଲାଗିଲେ। କଥାରେ ସତ୍ୟ ଆଦାୟ କରି ନ ପାରିବାରୁ ସେ ମାଡ଼ ଆରମ୍ଭ କରିଦେଲେ। ବିଚରା ଶଗଡ଼ିଆ ଆଉ କେତେ ଲୁଚାନ୍ତା ? ସତକଥାଟି କହିଦେଲା। ରାଜା ତାକୁ ଖଲାସ କରିଦେଇ ରାଗ-ତମତମ ହୋଇ ରାଣୀହଂସପୁରକୁ ଚାଲିଗଲେ। ଯାଇ ପାଟରାଣୀଙ୍କୁ କହିଲେ, "ତୁମକୁ ପାଟରାଣୀ କରି ମୁଁ ବହୁତ ଉପକାର ପାଇଗଲି। ସାଧାରଣ ଗାଉଁଲି ଶଗଡ଼ିଆ ହାତରେ ବି ତୁମେ ମତେ ଅପମାନ ଦେଲ ! ଏଥର ମୋ ନଅରରୁ ପଳାଇଯାଅ। ତୁମର ଆଉ ଏଠାରେ ସ୍ଥାନ ନାହିଁ। ତୁମ ବାପଘର କୁଡ଼ିଆରେ ବସି ତୁମ ବୁଦ୍ଧିବଳ ଦେଖାଅ; ଏଠାରେ ନୁହେଁ।"

ରାଜା ଅପମାନ ପାଇଥିବାରୁ ପାଟରାଣୀ ବହୁତ ଦୁଃଖ କଲେ; କ୍ଷମା ମାଗିଲେ। ରାଜା କୌଣସି କଥା ନ ଶୁଣିବାରୁ ଶେଷକୁ ସେ କହିଲେ, "ମଣିମା, ମୋର ଏ ନଅର ପ୍ରତି ବହୁତ ମମତା। ମୁଁ ଚାହୁଁଥିଲି ଏ ନଅରର ଟେକ କାଳକାଳକୁ ରହୁ; ଏକୁ ଛାଡ଼ି ମୁଁ କିପରି ଚାଲିଯିବି କହନ୍ତୁ ?"

ରାଜା କହିଲେ, "ଏତେ ଯଦି ମମତା, ତେବେ ଏ ନଅରର ଯେଉଁ

ଜିନିଷଟି ତୁମର ସବୁଠାରୁ ଅଧିକ ପ୍ରିୟ, ସେହିଟିକୁ ନେଇ ଚାଲିଯାଅ।''

ପାଟରାଣୀ କଣ ବିଚାର କଲେ କେଜାଣି, କହିଲେ, ''ତାହାହିଁ କରିବି ମଣିମା! ହେଲେ, ମୋର ମଣିମାଙ୍କ ଘରଣୀ ହେବା ଆଜିଠାରୁ ସରିଯିବ। ତେଣୁ ଆଜି ରାତିରେ ମୁଁ ନିଜ ହାତରେ ରାନ୍ଧିବାଢ଼ି ମଣିମାଙ୍କୁ ଖୁଆଇବି; ତା'ପରେ ଚାଲିଯିବି।''

ରାଜା 'ହଁ' ଭରିଲେ। ସେଦିନ ସନ୍ଧ୍ୟା ହେଉ ହେଉ ପାଟରାଣୀ ନିଜ ହାତରେ ରାନ୍ଧିବାଢ଼ି ରାଜାଙ୍କୁ ମଣୋହିକୁ ନିମନ୍ତ୍ରଣ କଲେ। ରାଜା ଖାଇବସିଲେ। କିନ୍ତୁ ପାଟରାଣୀ ରାଜାଙ୍କ ଖାଦ୍ୟରେ ଗୋଟିଏ କଡ଼ା ନିଦ ଔଷଧ ମିଶାଇ ଦେଇଥାନ୍ତି ଯେ, ଖାଇବା ଜାଗାରୁ ଉଠୁ ଉଠୁ ରାଜା ଘୋଡ଼ ନିଦରେ ଶୋଇପଡ଼ିଲେ। ରାଣୀ ଆଗରୁ ବିଶ୍ୱାସୀ ଚାକରଙ୍କୁ ଠିକ୍‌କରି ରଖିଥିଲେ। ସେ ସଙ୍ଗେ ସଙ୍ଗେ ରାଜାଙ୍କୁ ଗୋଟିଏ ଧଳା ଚାଦରରେ ଘୋଡ଼ାଇ ଦେଇ ସେହି ଚାକରଙ୍କ ହାତରେ ନିଜ ବାପଘରକୁ ବୋହିନେଲେ। ରାଜା ଚଷା ବୁଢ଼ାର କୁଡ଼ିଆ ଘରେ ସେ ରାତିକ ଶୋଇଲେ। ସକାଳେ ନିଦ ଭାଙ୍ଗିଲା। ଆଖି ମଳି ମଳି ଚାହିଁଦେବାବେଳକୁ ଦେଖନ୍ତି ତ ସେ ଗୋଟିଏ କୁଡ଼ିଆରେ ଶୋଇଛନ୍ତି। ରାଜା ଆଶ୍ଚର୍ଯ୍ୟ ହୋଇଗଲେ। ପାଟିକରି ପଚାରିଲେ, ''ଆରେ କିଏ ଅଛ ରେ, ଏଇଟା କେଉଁ ଜାଗା? ମୁଁ ଏଠାକୁ କିପରି ଆସିଲି?''

ଚଷାଝିଅ ପାଟରାଣୀ ତାଙ୍କ ପାଖକୁ ଆସି କହିଲେ, ''ମଣିମା, ଏଇଟା ମୋ ବାପଘର। ମୁଁ ଛାମୁଙ୍କୁ ଏଠାକୁ ନେଇଆସିଛି।''

ରାଜା ତଟସ୍ଥ ହୋଇଗଲେ– ''ଏଁ! ତୁମେ!! ତୁମେ କାହିଁକି ମତେ ଏଠିକି ନେଇଆସିଲ?''

–''ମଣିମା ମତେ ନଅରରୁ ତଡ଼ିଦେବା ବେଳେ କହି ନ ଥିଲେ ଯେ, ମୁଁ ମୋର ସବୁଠାରୁ ଅଧିକ ପ୍ରିୟ ଜିନିଷଟି ନେଇ ମୋ ବାପଘରକୁ ଚାଲିଯିବି?''

–''ହଁ, ତ!''

–''ଛାମୁଙ୍କଠାରୁ ଅଧିକ ପ୍ରିୟ ହୋଇ ମୋର ଆଉ କି ଜିନିଷ ଅଛି, କହନ୍ତୁ ତ? ତେଣୁ ଛାମୁଙ୍କୁ ମୁଁ ମୋ ସଙ୍ଗରେ ନେଇଆସିଛି। ଛାମୁଙ୍କ ସେବାକରି ମୁଁ ଏହି କୁଡ଼ିଆରେ କାଳ କାଟିବି।'' ରାଣୀ କହିଲେ।

ଏକଥା ଶୁଣି ରାଜା ପ୍ରସନ୍ନ ହୋଇଗଲେ। କହିଲେ, ''ସତରେ ରାଣୀ, ତୁମ ପରି ବୁଦ୍ଧିମତୀ ସ୍ତ୍ରୀକୁ ଛାଡ଼ି ମୁଁ ରହିପାରିବିନାହିଁ। ଚାଲ, ଆମେ ଆମ ନଅରକୁ ଫେରିଯିବା।''

ରାଜା ରାଣୀ ନଅରକୁ ଫେରିଗଲେ। ମଲାଗଲାଯାଏ ଦି'ପ୍ରାଣୀ ଏକାଠି ରହି ପ୍ରଜାପାଳନ କଲେ।

# ଦରଜି ଟୋକା, ଭାରି ତରକା

ଖରାଦିନଟା । ଜଣେ ଟୋକା ଦରଜି ତା ଦୋକାନରେ ବସି ଜାମା ସିଲେଇ କରୁଥାଏ । ଶୁଣିଲା, ଜଣେ ବୁଲାବିକାଳି ମଲେଇ ବିକି ବିକି ଯାଉଛି । ଦରଜି ସେଦିନ ଭାରି ଖୁସୀ ମନରେ ଥାଏ । ମଲେଇବାଲା ଯାଉଛି ଦେଖି ସେ ଡାକପକାଇଲା, "ହେ ମଲେଇବାଲା, କାହିଁ ଆଣ; ଦେଖିବା କେତେ ମଲେଇ ରଖିଛୁ ।" ଗରାଖ ଡାକିଲାଣି, ମଲେଇବାଲା କି ଆଉ ରହେ, ସେ ନେଇ ତା ପସରା ମେଲାଇଦେଲା ! ଦରଜି ଟୋକା ତା ଜିନିଷ ପରଖି ପକାଇଲା । କହିଲା, "ଏଁ ! ମାଲ ଧରିଛୁ ଜମା ଏତିକି; ଡାକ ପକାଉଛୁ ଯେ ସାହି କମ୍ପିଯାଉଛି ?"

ମଲେଇବାଲା କହିଲା, "ନ ଡାକିଲେ ଗରାଖ ଜାଣିବେ କିମିତି ଯେ ?"

ଦରଜି କହିଲା, "ଆରେ, ଆଉ ଗରାଖ ଖୋଜିବାକୁ ପଡ଼ିବ ନାହିଁ ମ– କାହିଁ, ଆଣ, ଓଜନ କର ।"

– "କେତେ ଦେବି ।"

– "ମୁଁ ଇମିତି ଟିକିଏ-ନିଖିଏବାଲା ନୁହେ ରେ; ଦେ, ଅଧପାଏ ଖଣ୍ଡେ ଓଜନ କର ।"

ଦରଜି ଟୋକାର ଟକର ଦେଖି ମଲେଇବାଲା ଭାବିଥିଲା ଯେ ଏହି ଏକା ଗରାଖ ପାଖରେ ତାର ଗୁଡ଼ାଏ ମାଲ କଟିଯିବ । କିନ୍ତୁ ଗରାଖ ମୋଟେ ଅଧପାଏ ମାଗୁଛି ଦେଖି ସେ ମୁହଁ ଆମ୍ବିଳା କରିଦେଲା । ମଲେଇ ଓଜନ କରୁ କରୁ କହିଲା, "ମାଲ କିମିତି ବଢ଼ିଆ ହେଇଚି ଦେଖିଲଟି ? ଅଧପାଏ କଣ . . . ।"

ଦରଜି କହିଲା, "ଆରେ, ଅଧିକ ଦେବୁ ତ ଦେଉନୁ; ଯାହା ଖାଇଥିବ ପେଟକୁ . . ., ଦେ, ତାହାହେଲେ ସୁଉକାଟିକର ଦେଇଦେ ।"

ଦରଜି ଟୋକାର ଏ ସଉଦାଗରପଣିଆ ଦେଖି ମଲେଇବାଲାର ମନ ଘରଧରିଗଲା । ସେ ଆଉ ବିଳମ୍ବ ନ କରି ପସରା ଉଠାଇ ପଳାଇଗଲା । ଦରଜି ଟିପେ ମଲେଇ ଚାଟି ଦେଇ ଟାକରା ମାରୁ ମାରୁ କାନ୍ଥ ଆଲମାରିରୁ ପାଉଁରୁଟି ଖଣ୍ଡେ କାଢ଼ିଆଣିଲା । ରୁଟିଟିକୁ ଦି'ଗଡ଼ କରି କାଟିଦେଲା । କହିଲା, "ବାସି ରୁଟିଟା ଖଟା ଲାଗନ୍ତା, ଏଥିରୁ ମଲେଇ ଟିକିଏ ମଡ଼େଇଦେଲେ ରଜାଘର ଖାନାକୁ ଟପିଯିବ । – ଥାଉ; ଆଗ ଏ ଜାମାରେ ବୋତାମ ଦିଇଟା ଲଗାଇଦିଏ; ତା'ପରେ ଖାଇବି ।"

ସେପଟେ ବୋତାମ ସିଲେଇ ଚାଲିଛି, ଏପଟେ ମଲେଇଦନାରେ ମାଛି ଘେରିଗଲେ । ସେ ଆଡ଼କୁ ନଜର ପଡ଼ିଯିବାମାତ୍ରେ ଦରଜି ହେ, ହେ, କରି

ମାଛିଗୁଡ଼ାଙ୍କୁ ଘଉଡ଼ାଇ ଦେଲା। ତଥାପି ମାଛିଗୁଡ଼ାକ ଭଣଭଣ ହୋଇ ମଲେଇକୁ ଘେରିଗଲେ ଦେଖି ଦରଜି ରାଗିଗଲା। କହିଲା, "ରହ ରହ, ମୁଁ ଆଜି ତୁମକୁ ବୁଦ୍ଧି ଶିଖାଇଦେଉଛି।" ଏପରି କହି ସେ ପାଖରେ ପଡ଼ିଥିବା ଖଣ୍ଡିଏ ଗଦି କନା ଉଠାଇ ଆଣି ସେଇଟାକୁ ଦୁଇ ପରସ୍ତକରି ମାଛିଙ୍କ ଉପରେ ଏପରି ଛାଟିଦେଲା ଯେ, କେତେଟି ମାଛି ମରିଗଲେ। "ତୁମକୁ ଏଇମିତିକା ମାଡ଼ ଦରକାର। ଦେଖି ଦେଖି, କେତେଟା ମଲ" –କହି ଦରଜି ଟୋକା ମଲା ମାଛିଗୁଡ଼ିକୁ ଗଣିବାକୁ ଲାଗିଲା, "ଏକ, ଦୁଇ, ତିନି, ଚାରି, ପାଞ୍ଚ, ଛଅ, ସାତ! ବାଃ! ଏକାମାଡ଼କେ ସାତ ଖତମ୍। ମୁଁ ତ କିଛି କମ୍ ବଳୁଆ ନୁହେଁ। –ଏ ଖବରଟା ସମସ୍ତେ ଜାଣିଯିବା ଦରକାର।" ଏପରି କହି ସେ ଖଣ୍ଡିଏ ଧଳା କନା ପଟି ଉପରେ ନାଲି ସୂତାରେ ବଡ଼ ବଡ଼ ଅକ୍ଷର ସିଲାଇ କରିଦେଲା– 'ଏକାମାଡ଼କେ ସାତ'! ତା'ପରେ ପଟି ଖଣ୍ଡିକ ନିଜର ଜାମା ଛାତି ଉପରେ ସିଲାଇ କରିଦେଇ ଜାମା ପିନ୍ଧିପକାଇଲା। ଭାବିଲା, ଏଥର ଯଦି ଦାଣ୍ଡକୁ ବାହାରିପଡ଼ିବି, ତେବେ ଲୋକଙ୍କୁ ପାଟିରେ କହିବା ଦରକାର ହେବ ନାହିଁ; ସେମାନେ ବଳେ ବଳେ ମୋ ବୀରପଣିଆ ଜାଣିଯିବେ।

ଘରୁ ବାହାରିପଡୁଛି, ମନେପଡ଼ିଲା, ସାଙ୍ଗରେ କିଛି ଖାଇବା ଜିନିଷ ଧରିଥିଲେ ଭୋକବେଳକୁ ପାଟିରେ ପକାଇହେବ। ଦିନ-ମଜୁରିରେ ପେଟ ପୋଷୁଥିବା ଲୋକ ଘରେ କ'ଣ ଅବା ଥାଆନ୍ତା। ଦରଜି ଟୋକା ଖୋଜି ଖୋଜି ଖଣ୍ଡିଏ ବାସି ଛେନା ପାଇଲା। ଛେନାଖଣ୍ଡଟି ମୁଣିରେ ପକାଇ ଦେଇ ଘରୁ ପାଦ କାଢ଼ିବାବେଳକୁ ଦେଖିଲା ସେ ପାଖରେ କଣ୍ଟାବୁଦାରେ ଗୋଟିଏ ଚଢ଼େଇ ଲାଗିଯାଇଛି ଯେ ଆଉ ସେଥିରୁ ବାହାରି ପାରୁନାହିଁ। ଦରଜି ଟୋକା ତ ଭାରି ଫିସାଦିଆ, ଚୁପ୍‌ଚୁପ୍ ଯାଇ ସେ ବୁଦା ଭିତରେ ହାତ ପୂରାଇଦେଲା। ଚଢ଼େଇଟି ଧରାପଡ଼ିଗଲା। ଦରଜି ସଙ୍ଗେ ସଙ୍ଗେ ତାକୁ ଆଣି ମୁଣିରେ ପୂରାଇଦେଲା। ଏଥର ଆଉ ଡେରି ନ କରି ସେ ଦାଣ୍ଡକୁ ବାହାରିପଡ଼ିଲା। ତା ଛାତିରେ 'ଏକାମାଡ଼କେ ସାତ!' ଲେଖା ହୋଇଥିବା ଦେଖି ଦାଣ୍ଡଲୋକେ ଆଚମ୍ବିତ ହୋଇଗଲେ। ଦରଜି ଶୁଣିଲା, ଲୋକେ କୁହାକୁହି ହେଉଛନ୍ତି– ଲୋକଟା କି ପାରିବାର ନୁହଁ ହେ!! ଏକାମାଡ଼କେ ସାତ-ସାତଟାଙ୍କୁ ଖତମ୍ କରିଦେଲା! ଲୋକଙ୍କର ଏ ଆଚମ୍ବିତ ଭାବ ଦେଖି ତା ଛାତି ଆହୁରି ଫୁଲିଗଲା। ଭାବିଲା, ନିଜ ଜାଗା ଲୋକେ ତ ଜାଣିଗଲେ; ବାହାର ଲୋକେ ବି ଟିକିଏ ଜାଣିଯାଆନ୍ତୁ। ଏହା ଭାବି ସେ ଏକମୁହାଁ ହୋଇ ଗାଆଁରୁ ବାହାରିପଡ଼ିଲା।

ମନଖୁସିରେ ଚାଲିଛି, ଦେଖିଲା ଏକ ପାହାଡ଼ ପାଖରେ ଗୋଟିଏ ଅସୁର ବସିଛି। ଦରଜି ଟୋକା ନିଦକରେ ଅସୁରକୁ ପଚାରିଲା, "କିରେ, ଆଜି କଣ

ଏଇଠି ବସି ପବନ ଖାଉଛୁ ?''

ଅସୁର ଖଣ୍ଡେ ବାଟରୁ ଦରଜି ଟୋକାକୁ ଦେଖିଲାଣି। ତାକୁ ଧରିବା ପାଇଁ ସେ ହାତ ବଢ଼େଇଦେବାକୁ ବସିଥିଲା; କିନ୍ତୁ ଦରଜି ଟୋକା ଛାତିରେ 'ଏକାମାଡ଼କେ ସାତ !' ଲେଖା ହୋଇଛି ଦେଖି ସେ ଟିକିଏ ଦବିଗଲା। ତଥାପି ତାର ବିଶ୍ୱାସ ହେଲା ନାହିଁ ଯେ ଏପରି ଜଣେ ସାଧାରଣ ଲୋକ ଏକାମାଡ଼କେ ସାତ ଜଣକୁ ମାରିଦେଇଥିବ। ତେଣୁ ସେ ତର ଦେଖାଇ କହିଲା, ''ପବନ ଖାଉନାହିଁ ରେ, ପାଣି ପିଉଛି।''

ଦରଜି ଟୋକାର ବହପ କିଛି କମ୍ ନୁହେଁ। ସେ କହିଲା, ''ଆରେ, ମୋ ଆଗରେ ଏ ତର ଦେଖାଇବୁ ନାହିଁ। ମୁଁ ଏକାମାଡ଼କେ ସାତ-ସାତଟାଙ୍କୁ ଖତମ୍ କରିଦେବା ଲୋକ। ଏ ଲଣ୍ଡା ପାହାଡ଼ରେ ପାଣି କାହିଁ ଯେ, ତୁ ପିଉଛୁ ?''

ଅସୁର କହିଲା, ''ତୋର ଯଦି ଏତେ ବଳ, ବାଜି ଲଗା। ମୁଁ ଏ ପଥର ଚିପୁଡ଼ି ପାଣି ବାହାରକରି ପିଇବି; ତୁ ପାରିବୁ ?''

ଦରଜି କହିଲା, ''ବାଜି ରହିଲା। ଦେଖିବା, ତୁ ସେ ବଡ଼ ପଥରଟା ଚିପୁଡ଼ି କେତେ ପାଣି ବାହାର କରିବୁ।'' ଅସୁର ସଙ୍ଗେ ସଙ୍ଗେ ଖଣ୍ଡିଏ ବଡ଼ ପଥର ଉଠାଇ ନେଇ ଦୁଇ ହାତରେ ଧରି ଏପରି ଚିପିଦେଲା ଯେ ସେଥିରୁ ଟପଟପ ହୋଇ କେତେ ଟୋପା ପାଣି ବାହାରିପଡ଼ିଲା। ଏ ଭିତରେ ଦରଜି ତା ମୁଣିରୁ ଛେନାଖଣ୍ଡଟି କାଢ଼ି ହାତରେ ଧରିସାରିଥାଏ; ଅସୁରର ସେ ଆଡ଼କୁ ନଜର ନାହିଁ। ସେ ପଥରରୁ କିପରି ପାଣି ଝରୁଛି ଦେଖାଇ ହସୁଥାଏ। ଦରଜି ଟୋକା ଗୋଟିଏ ଛୋଟ ପଥର ଉଠାଇନେଇ ଛେନା ସାଙ୍ଗରେ ଧରି ଦୁଇ ହାତରେ ଚିପିଦେଲା। କହିଲା, ''ତୁ ଏଡ଼େ ବଡ଼ ପଥର ଚିପୁଡ଼ି ଏତେ ଟିକିଏ ପାଣି ବାହାର କଲୁ। ଦେଖ୍, ମୁଁ ଏଡ଼ିକି ଛୋଟ ପଥରଟିଏ ଚିପୁଡ଼ି କେତେ ପାଣି ବାହାର କରୁଛି !''

ଦରଜି ହାତରୁ ଥପ୍‌ଥପ୍ ହୋଇ ପାଣି ଗଳିପଡୁଛି ଦେଖି ଅସୁର ଆବାକାବା ହୋଇଗଲା। ଏଡ଼ିକି ଟିକିଏ ମଣିଷ; ଏଇଟାର ପୁଣି ଏତେ ବଳ !! ଏଥର ଅସୁର ମନରେ ରାଗ ଉଠିଲା। କହିଲା, ''ଦେଖ, ମୁଁ ଖଣ୍ଡେ ପଥର ଫୋପାଡ଼ିବି ଯେ ଦୁଇଶହ ହାତ ଦୂରରେ ପଡ଼ିବ; ତୁ ପାରିବୁ ?''

ଦରଜି କହିଲା, ''କାହିଁ ଦେଖି, ଫୋପାଡ଼ିଲୁ।''

ଅସୁର ଖଣ୍ଡିଏ ପଥର ଧରି ଫୋପାଡ଼ି ଦେଲା ଯେ ସତରେ ବହୁତ ଦୂରରେ ଯାଇ ପଡ଼ିଲା। ଦରଜି କହିଲା, ''କାହିଁ, କେତେ ଦୂରରେ ପଡ଼ିଲା, ମାପ ମାପ।'' ଅସୁର ଯାଇ ମାପି ସାରି ଆସିବା ବେଳକୁ ଦରଜି ଟୋକା ତା ମୁଣିରୁ ଚଢ଼େଇଟି କାଢ଼ି ହାତମୁଠାରେ ଧରିସାରିଲାଣି। ଅସୁର ଆସୁ ଆସୁ ସେ

କହିଲା, "ଦେଖ, ମୋ ପଥର ଏତେ ଦୂର ଯିବ ଯେ ତୁ ମୋତେ ମାପି ପାରିବୁ ନାହିଁ।"

"ମତେ ଆଉ ବଡ଼ିମା ଦେଖା ନାହିଁ।" କହି ଅସୁର ତା ମୁହଁରୁ ଝାଳ ପୋଛିବାକୁ ଲାଗିଲା। ଏ ଭିତରେ ଦରଜି ଟୋକା ଗୋଟିଏ ହୁଙ୍କାର କରି ଚଢ଼େଇଟି ଫୋପାଡ଼ିଦେଲା। ଚଢ଼େଇ ତ ଏତେବେଳଯାଏଁ ମୁଣା ଭିତରେ ରହି ଖସିଯିବାପାଇଁ ଛଟରପଟର ହେଉଥିଲା; ଏବେ ଉଡ଼ିଯିବାର ସୁଯୋଗ ପାଇ ସେ ଏପରି ଉଡ଼ିପଳାଇଲା ଯେ, ଯାଇ ମେଘ ଭିତରେ ଅଦୃଶ୍ୟ ହୋଇଗଲା। କଳା ଚଢ଼େଇଟି ଦେଖି ଅସୁର ଧରିନେଲା ଯେ ଦରଜି ଟୋକା ସତରେ ପଥରଟାଏ ଫୋପାଡ଼ିଥିଲା। ତେଣୁ ସେ ଦରଜି ଟୋକାକୁ ପ୍ରଶଂସା ନ କରି ରହିପାରିଲାନାହିଁ।

ଦୁଷ୍ଟଗୁଡ଼ାକ ତ ମୂର୍ଖ; ହାରିଲେ ବି ଭୁରୁଡୁ ଛାଡ଼ନ୍ତି ନାହିଁ। ଏଥର ଅସୁର ଗୋଟିଏ ଉପୁଡ଼ି ପଡ଼ିଥିବା ବରଗଛ ଦେଖାଇ ଦରଜିକୁ କହିଲା, "ଆମେ ଦୁହେଁ ମିଶିଲେ ଏ ଗଛଟାକୁ ଟେକିନେଇ ଯାଇପାରିବା ନାହିଁ? —ଯଦି ତୁ ଅଧେ ଟେକିନେବୁ, ତେବେ ମୁଁ ଆଉ ଅଧକ ଟେକିନେବି।"

ଦରଜି କହିଲା, "କି କଥା କହୁଛୁ ରେ! କଥାରେ ଅଛି ଯୋଡ଼ାକୁ ଘୋଡ଼ା ସରି ନୁହେଁ; ଆମେ ବି'-ବି'ଜଣ ବୀର ଥାଇ ଗଛଟାକୁ ଅଧା ଅଧା କରି କାଟିବା !! କେଉଁଠିକି ବୋହିନେବା କହିଲୁ ?"

—"ଆମ ଗୁମ୍ଫା ପର୍ଯ୍ୟନ୍ତ।"

—"ତା'ହେଲେ ତ ମୁଁ ଏକାଟିଆ ଟେକି ନିଅନ୍ତି। କିନ୍ତୁ କଥା କଣ କି. ମୁଁ ତୁମ ଗୁମ୍ଫାକୁ ବାଟ ଦେଖି ନାହିଁ। ତେଣୁ ଦିହେଁ ମିଶି ଟେକିନେବା। ଏ ଗଛରେ ତ ଏତେ ଡାଳ— ହେଲେ କଣ ହେଲା, ତୁ ଆଗପଟ ଧର, ମୁଁ ପଛପଟ ଧରୁଛି; ଗଛଟାକୁ ଫୁଲ ପରି ଟେକିନେବା।"

ଅସୁର କହିଲା, "ଇମିତି ମୁହଁଭୁରୁଡୁରେ ଚଳିବ ନାହିଁ; ତୁ ଠିକ୍ ଟେକିପାରିବୁଟି ?"

ଦରଜି କହିଲା, "ଦେଖୁଛି, ତୋ ହିମତ୍ ପାଉନି। ଠିକ୍ ଅଛି, ତୁ ସେ ମୂଳ ପଟଟା ଧରି ଆଗରେ ଚାଲ, ମୁଁ ଏ ସବୁଗୁଡ଼ାକ ଡାଳ ଧରି ପଛରେ ଚାଲିବି; ତୋ ପରି ଡରୁଆ ଲୋକ ଏତେଗୁଡ଼ାଏ ଡାଳ ଧରିପାରିବ ନାହିଁ।"

'ଡରୁଆ' ପଦ ଶୁଣି ଅସୁର ରାଗରେ ଦାନ୍ତପାଟି କାମୁଡ଼ି ଏତେ ବଡ଼ ବରଗଛଟାର ମୂଳରୁ ଏକା ହୁଙ୍କାରରେ କାନ୍ଧ ଉପରକୁ ଟେକିଦେଲା। ଏଥର ଦରଜି ଟୋକା ଗୋଟିଏ ଡାଳରେ ବସିପଡ଼ି ପାଟିକଲା, "ହଁ, ହଁ, ଠିକ୍ ଧରିଛୁ। ଦେ, ଏଥର ଚାଲ।" ଅସୁର ତ ବିରାଟ ବୋଝ ଧରିଥାଏ, ସେ ଆଉ ପଛକୁ ବୁଲି ଦରଜିକୁ ଚାହିଁ ଦେଖିବ କିପରି ? ସେ କାନ୍ଦି-କୁନ୍ଥେଇ ଆପଣା ବୋଝ ନେଇ ଆଗେଇ ଚାଲିଲା। ଦରଜି ମହାମଉଜରେ ଡାଳରେ ବସି ଚାଲିଥାଏ;

ମଝି-ମଝିରେ ପଦେ ପଦେ ଗୀତ ବୋଲିଦେଉଥାଏ। କିଛି ବାଟ ଚାଲିବା ପରେ ଅସୁର ଧଇଁସଇଁ ହୋଇଗଲା।

ଦରଜି ତାକୁ ଶୁଣାଇ ଶୁଣାଇ କହିଲା, "ହଇ ରେ, ମୁଁ ଏ ଶହେ ତାଳ ଧରି ଚାଲିଛି; ମତେ ତ କାହିଁ କିଛି ବାଧା ଲାଗୁନାହିଁ। ତୁ ଗୋଟାଏ ଗଣ୍ଡି ଧରି ଇମିତି କୁଣ୍ଠୋଉଛୁ କଣ ?"

ଅସୁର କହିଲା, "କଞ୍ଚା ଗଛଟା ନେଇ ଲାଭ କଣ ? ଏଇଠି ପଡ଼ିଥାଉ, ଶୁଖିଲେ ନେଇଯିବି।" ଏପରି କହି ସେ ଗଣ୍ଡିଟିକୁ ଦୁଲ୍‌କରି ତଳେ ପକାଇଦେଲା। ଦରଜି ହସି ହସି କହିଲା, "ତୁ ଗୋଟାଏ ଗଣ୍ଡି ଧରିପାରିଲୁ ନାହିଁ ଯେ ରାସ୍ତାମଝିରେ ପକାଇଦେଲୁ, ଏ ତାଳଗୁଡ଼ାକ ଧରିଥିଲେ ତୁ ବୋଧହୁଏ ହଗିପକାନ୍ତୁ।"

ଅପମାନରେ ଅସୁରର ମୁହଁ ତଳକୁ ହୋଇଗଲା। କ'ଣ କରି ଦରଜି ଟୋକା ଉପରେ ଦାଉ ସାଧିବ, ବୁଝିପାରିଲା ନାହିଁ। ଦିହେଁ ଚାଲିଛନ୍ତି, ଆଗରେ ଗୋଟିଏ ଜାମୁକୋଳି ଗଛ ପଡ଼ିଲା। ଗଛର ଉପର ଡାଳରେ ଗୁଡ଼ିଏ ପାଚିଲା କୋଳି ଥାଏ। ଅସୁର ଗୋଟିଏ ବଡ଼ ଡାଳ ଧରି ତଳକୁ ନୁଆଇଁ ଦେଲା। ଦିହେଁ କିଛି କୋଳି ତୋଳି ଖାଉଛନ୍ତି, ଏତିକିବେଳେ ଅସୁର ଦରଜି ଟୋକା ହାତକୁ ଡାଳଟି ବଢ଼ାଇ ଦେଇ କହିଲା, "ଏ ଡାଳଟା ଧରିଥା, ମୁଁ ଆଉ ଗୋଟିଏ ଡାଳ ନୁଆଇଁ ଦେଉଛି।" ଏତିକି କହି ଅସୁର ଡାଳଟି ଛାଡ଼ିଦେଲା। ଦରଜି ଟୋକା ସେ ଡାଳରେ ହାତ ଦେଉ ଦେଉ ଡାଳଟି ତାକୁ ଟେକି ନେଇ ଏପରି ଛାଟିଦେଲା ଯେ ସେ ଗଛ ଉପରବାଟେ ଯାଇ ଆରପଟେ ତଳେ ପଡ଼ିଗଲା। ରକ୍ଷା ହୋଇଛି, ସେ ଟୋକା ସିମିତି ଉପାୟ ଜାଣେ ବୋଲି ତଳେ ପଡ଼ିବାବେଳକୁ ତା ହାତଗୋଡ଼ କିଛି ଭାଙ୍ଗି ନ ଥାଏ। ତା ଅବସ୍ଥା ଦେଖି ଅସୁର ଠୋ-ଠୋ ହୋଇ ହସିପକାଇଲା। କହିଲା, "ଏଡ଼େ ବଡ଼େଇ ଦେଖେଇହେଉଥିଲୁ; ଛାର ଡାଳଟାକୁ ଭିଡ଼ି ଧରିପାରିଲୁ ନାହିଁ ଯେ ଛିଟିକି ହୋଇ ପଡ଼ିଗଲୁ ?"

ଦରଜି ଟୋକା କହିଲା, "ଏଥରୁ ତୁ ଏଇଆ ବୁଝିଲୁ ? ଆରେ। ମୁଁ ଛିଟିକି ଯାଇ ନାହିଁ, ଗଛ ଉପରେ ଆଉ କେତେ କୋଳି ଅଛି ଦେଖିବାକୁ ଗଛ ଉପରକୁ ଡେଇଁପଡ଼ିଥିଲି। ଏତେ ତ କହୁଛୁ, କାହିଁ ଦେଖିବା ମୋପରି ଡେଇଁଲୁ ?"

ବାଜି ହରାଇବାକୁ ପଡୁଛି ଦେଖି ଅସୁର ଖୁବ୍ ଜୋର୍ ଲଗାଇ ଗଛ ଉପରକୁ ଡେଇଁପଡ଼ିଲା। କିନ୍ତୁ କେତେ ବଳ ଥିଲେ କଣ ହେବ; ତା'ପରି ମୋଟାସୋଟା ଲୋକ ଏତେ ଉଚ୍ଚକୁ ଡେଇଁବା ମୋଟେ ସହଜ କଥା ନୁହେଁ; ଫଳରେ ଅସୁର ଯାଇ ଗଛର ଏକ ମଝି ଡାଳରେ ଲାଗିଗଲା। ଦରଜି ତାକୁ ହସରେ ଉଡ଼ାଇଦେଲା। ସବୁ କାମରେ ଦରଜି ଟୋକା ପାଖରୁ ଏପରି ହାର ଖାଇ ଅସୁର ଶେଷକୁ

କହିଲା, "ଏଥର ମୁଁ ମାନିଲି – ତୁ ସତରେ ଜଣେ ବୀର।"

ଦରଜି କହିଲା, "ଆରେ ଇମିତି ସିମିତି ବୀର ନୁହେଁ ମ, ଏକାମାଡ଼କେ ସାତ ଖତମ୍ କଲାବାଲା ବୀର !"

ଅସୁର କହିଲା, "ନ ହେଲେ କି ତୁ ମିଛରେ ଏପରି ଛାପ ପାଇଥାନ୍ତୁ ! ଠିକ୍ ଅଛି। ଚାଲ, ଆଜି ରାତିକ ଆମ ଗୁମ୍ଫାରେ କୁଣିଆ ହୋଇ ରହିବୁ। ତତେ ଦେଖିଲେ ମୋ ସାନଭାଇମାନେ ଖୁସି ହେବେ।" ଦରଜି ଅସୁର ସାଙ୍ଗରେ ଯାଇ ତା ଗୁମ୍ଫାରେ ପହଞ୍ଚିଲା। ସେତେବେଳକୁ ରାତି ହୋଇଯାଇଥାଏ। ଚାରିଟା ଅସୁର ବସି ଧୁନି ଜାଳି ସେକିସାକି ହେଉଥାନ୍ତି। ନିଆଁରେ ଗୋଟିଏ ମେଣ୍ଢା ପୋଡ଼ିଥାନ୍ତି ଯେ, ଗନ୍ଧରେ ରହି ହେଉ ନଥାଏ। ଏ ଦିହିଁକୁ ଦେଖି ଅନ୍ୟମାନେ ପଚାରିଲେ, "ବଡ଼ଭାଇ, ଆଜି ଏତେ ଡେରି କାହିଁକି ? ଏଥିରୁ ଗୋଟେ ମଣିଷକୁ ଧରିଆଣିଛ ! – ଆଜି ମଣିଷ-ମାଉଁସ ଭୋଜି କରିବା ନା କ'ଣ ?"

ଦରଜି ଟୋକା ଛାତି ଫୁଲାଇ କହିଲା, "ତୁମେ ମୋତେ ଭୋଜିକରି ଖାଇବ କି ମୁଁ ତୁମକୁ ଭୋଜିକରି ଖାଇବି, ଆଜି ଦେଖାଯିବ। ଆରେ, ତୁମେ ତ ମୋଟେ ପାଞ୍ଚଜଣ; ମତେ ଜାଣିଛ ? ମୁଁ ଏକାମାଡ଼କେ ସାତ-ସାତଟାକୁ ଖତମ୍ କରିଦେବାବାଲା !! – ପଚାର ପଚାର, ତୁମ ବଡ଼ଭାଇକି ପଚାର; କହିବ।"

ଏ କଥା ଶୁଣି ଅସୁରମାନେ ତାଟକା ହୋଇଗଲେ। ବଡ଼ ଅସୁର ଭାଇମାନଙ୍କୁ ଆଖି ଦେଖାଇ କହିଲା, "ତୁମେ ଟୋକାଗୁଡ଼ାକ ଭଦ୍ରତା ଶିଖିଲ ନାହିଁ। ଘରକୁ କୁଣିଆ-ମଇତ୍ର ଆସିଲେ ବି ଥଟ୍ଟା-ତମାସା କରୁଛ ? – ଆରେ, ସେ ଖାଇବେ କଣ, ଶୋଇବେ କେଉଁଠି . . . ଏ ସବୁକଥା ବୁଝ।"

ସାନ ଅସୁରମାନେ କହିଲେ, "ସେ ବଡ଼ ଖଟରେ ଶୁଅନ୍ତୁ। ଆମେ ଏ ତଳେ ଶୋଇପଡ଼ିବା।" ବଡ଼ ଅସୁର ଦରଜିକୁ ନେଇ ଗୋଟିଏ ମସ୍ତବଡ଼ ଖଟରେ ବସାଇଦେଇ କହିଲା, "ଶେଯ ତକିଆ ସବୁ ରହିଛି। ଏହି ଖଟରେ ଆଜି ଶୋଇପଡ଼।" କିଛି ସମୟପରେ ଯେ ଯାହାର ଖାଇପିଇ ଶୋଇବାକୁ ଚାଲିଗଲେ। ଦରଜି ଦେଖିଲା, ତାକୁ ଦିଆଯାଇଥିବା ଖଟଟି ଏତେ ବଡ଼ ଯେ ସେଥିରେ ତା'ପରି ଦଶ-ବାର ଜଣ ଲୋକ ଶୋଇପାରିବେ। ସେ ଖଟରେ ଶୋଇଲେ କାଳେ କି ବିପଦ ପଡ଼ିବ ଭାବି ଦରଜି ଆଉ ସେଥିରେ ଶୋଇଲା ନାହିଁ। ଅସୁରମାନେ ନିଦରେ ଘୁଙ୍ଗୁଡ଼ି ମାରିଲେଣି ଦେଖି ସେ ନିଜ ଖଟଉପରେ ଲମ୍ବଭାବରେ ଦୁଇଟି ତକିଆ ଶୁଆଇଦେଲା ଏବଂ ତା' ଉପରେ ଖଣ୍ଡିଏ ଚଦର ଘୋଡ଼ାଇଦେଲା – ଯେ ଦେଖିବ, ସେ ଭାବିବ ଯେ ଖଟରେ କେହି ଜଣେ ଶୋଇଛି। ଏପରି କରିଦେଇ ସେ ନିଜେ ଖଟତଳେ ଲୁଚିଗଲା। କିଛି ସମୟ ଖଟତଳେ ଲୁଚିରହିବା ପରେ ସେ ଶୁଣିଲା ବଡ଼ ଅସୁର ସାନ ଅସୁରମାନଙ୍କୁ ଉଠାଇ ଚୁପ୍‌ଚୁପ୍ କରି

କହୁଛି, ''ଏ, ତୁମେ ଇମିତି ଆରାମରେ ଶୋଇଲେ ଚଳିବନାହିଁ। ଏ ଯେଉଁ ଲୋକଟା ମୋ ସାଙ୍ଗରେ ଆସିଛି, ଏ ଗୋଟାଏ ବଡ଼ ବୀର। ମୁଁ ଦେଖୁଛି, ଏଇଟା ଯଦି ବଞ୍ଚିରହେ, ଦିନେ ନା ଦିନେ ଆମମାନଙ୍କୁ ପ୍ରାଣରେ ମାରିପକାଇବ। ଆସ, ସେ ଶୋଇଥିବା ବେଳେ ତାକୁ ଖତମ୍ କରିଦେବା।''

ଏକଥା ଶୁଣି ଆଉ ଜଣେ ଅସୁର କହିଲା, ''ଠିକ୍ କଥା। ଶୋଇଥିବାବେଳେ ଶାବଳରେ ଛେଚିଦେବା ଯେ, ଚଟଣି ହୋଇଯିବ।'' ଏପରି ଠିକ୍ କରି ଅସୁରମାନେ ଗୋଟିଏ ଗୋଟିଏ ବଡ଼ ଲୁହା ଶାବଳ ଉଠାଇ ଆଣି ଖଟ ପାଖରେ ପହଞ୍ଚିଗଲେ। ଖଟରେ ପଡ଼ିଥିବା ତକିଆ ଓ ଚାଦର ଦେଖି ସେମାନେ ଭାବିଲେ ଦରଜି ଆରାମରେ ଶୋଇଛି। ତେଣୁ ସେ ତକିଆ ଉପରେ ନିଜ ନିଜ ଶାବଳରେ ପାହାର ଉପରେ ପାହାର ପକାଇଦେଇଗଲେ ଯେ, ସେ ମାଡ଼ରେ ଗୁମ୍ଫାଭିତରଟା କମ୍ପିବାକୁ ଲାଗିଲା। ଦରଜି ଖଟତଳେ ବସି ନିଜ ବୁଦ୍ଧିକୁ ଧନ୍ୟ ଧନ୍ୟ କହୁଥାଏ। ଦରଜି ଶାବଳ-ପାହାର ଖାଇ ମରିଗଲା ଭାବି ଅସୁରମାନେ ଯେ ଯାହା ସ୍ଥାନକୁ ଯାଇ ଶୋଇପଡ଼ିଲେ। ଦରଜି ଟୋକା ବି ନିଜ ଲୁଚିଥିବା ସ୍ଥାନରୁ ବାହାରି ଚୁପ୍‌ଚାପ୍ ଯାଇ ଖଟଉପରେ ଶୋଇପଡ଼ିଲା। ରାତି ପାହି ସକାଳ ହେବାବେଳକୁ ଅସୁରମାନେ ତା କଥା ପାଶୋରିଗଲେଣି। ଟିକିଏ ଫର୍ଚ୍ଚା ହେଉ ହେଉ ସେମାନେ ଚରାବୁଲା କରିବାକୁ ବାହାରୁଛନ୍ତି, ଏତିକିବେଳେ ଦରଜି ହାଇ ଅଳସ ଭାଙ୍ଗି ଶେଯରୁ ଉଠିପଡ଼ିଲା। ଅସୁରମାନେ ପଳାଉଛନ୍ତି ଦେଖି ସେ ପାଟିକରି ପଚାରିଦେଲା, ''କି ରେ, କି ରେ, କୁଆଡ଼େ ପଳାଉଛ ରେ . . . ?''

କଥାରେ ଅଛି, ଚୋରମନ ଗଣ୍ଠିରେ। ଅସୁରମାନେ ତ ଭାବିଥିଲେ ଯେ ଶାବଳ ପାହାର ଖାଇ ଦରଜି ମରିଗଲାଣି। ଏବେ ସେ ବଞ୍ଚିଛି ଦେଖି ଅସୁରଙ୍କ ପିଳେହି ପାଣି ହୋଇଗଲା। ତହିଁକି ସେ ଯେତେବେଳେ, ''କି ରେ, କୁଆଡ଼େ ପଳାଉଛ ରେ . . .''କହି ଧଡ଼ପଡ଼ ହୋଇ ଶେଯରୁ ଉଠିପଡ଼ିଲା, ସେଥିରେ ଅସୁରକି ଆଉ ଥୟ ଧରି ରହନ୍ତେ। ତାର ସେ ଡାକ ଶୁଣି, ''ଆରେ ଭାଇ, ଖାଇଗଲା ରେ . . . !'' କହି ଚିଚିରା ରଡ଼ି ଛାଡ଼ି ସେମାନେ ସେଠାରୁ ଏପରି ଭାଗିପକାଇଗଲେ ଯେ, କିଏ କୁଆଡ଼େ ଚାଲିଗଲା, ତାର ପତ୍ତା ରହିଲା ନାହିଁ। ଅସୁରମାନେ ଡରି ପଳାଇଗଲେ ଦେଖି ଦରଜି ଟୋକା ଗୁମ୍ଫାରୁ କିଛି ଟଙ୍କାସୁନା ନେଇ ଦେଶ ବୁଲି ବାହାରିପଡ଼ିଲା।

ବଣଜଙ୍ଗଲ ପାରହୋଇ ଚାଲୁ ଚାଲୁ ସେ ଯାଇ ଗୋଟିଏ ରାଜ୍ୟର ରାଜଧାନୀରେ ପହଞ୍ଚିଗଲା। ରାଜଧାନୀରେ ରାଜାଙ୍କ ନଅର। ଦରଜି ତ ଚାଲି ଚାଲି ହାଲିଆ ହୋଇଯାଇଥାଏ। ସେ ଆଉ ଆଗକୁ ଯାଇ ନପାରି ରାଜନଅର ଆଗରେ ଥିବା ପଡ଼ିଆରେ ଶୋଇପଡ଼ିଲା। ସେ ଏପରି ଶୋଇଛି, ରଲା-ଅଇଲା ଲୋକଙ୍କର

ତା ଉପରେ ନଜର ପଡ଼ିଲା। 'କିଏ ଏପରି ଶୋଇଛି' ବୋଲି ଚାହୁଁ ଚାହୁଁ ଲୋକେ ଦେଖିଲେ ତା ଛାତିରେ ନାଲି ଅକ୍ଷରରେ ଲେଖା ହୋଇଛି– 'ଏକାମାଡ଼କେ ସାତ!' ଲୋକେ ଛାନିଆ ହୋଇଗଲେ। ବାପ୍‌ରେ ବାପ୍! ଏ ତ କିଛି ସାମାନ୍ୟ ଲୋକ ହୋଇ ନଥିବ! ଏକାମାଡ଼କେ ସାତ-ସାତଟାଙ୍କୁ ମାରିଦେଇପାରୁଥିବା ଲୋକ ତ ନିଶ୍ଚୟ ଜଣେ ମହାବୀର ହୋଇଥିବ! ଏପରି ଭାବି ଲୋକେ ଯାଇ ରାଜାଙ୍କୁ ଜଣାଇଲେ, "ମଣିମା, ଆମ ରାଜ୍ୟକୁ ଜଣେ ମହାବୀର ଆସିଛନ୍ତି। ସେ ଏକାମାଡ଼କେ ସାତ-ସାତଟାଙ୍କୁ ମାରିଦେଉଛନ୍ତି। ଛାମୁ ଯଦି ଏ ବୀରଙ୍କୁ ରଖନ୍ତି, ତେବେ ଆମ ରାଜ୍ୟକୁ ଆଉ ଶତ୍ରୁଭୟ ରହିବ ନାହିଁ।"

ସବୁ ଶୁଣି ରାଜା କହିଲେ, "ଠିକ୍ କହିଛ। ଏଭଳି ବୀରଙ୍କୁ ଭତ୍ତା ଦେଇ ଆମ ସୈନ୍ୟବାହିନୀରେ ରଖିଦେବା; କିନ୍ତୁ ସେ ଆମ ଭତ୍ତା ନେଇ ରହିଲେ ହେଲା। ଆମ ମନ୍ତ୍ରୀ ଯାଇ ତାଙ୍କୁ ପଚାରି ଆସନ୍ତୁ, ତାଙ୍କ ଇଚ୍ଛା କ'ଣ ସେ କହନ୍ତୁ।" ଫଳରେ ରାଜାଙ୍କ ପ୍ରସ୍ତାବ ଧରି ନିଜେ ମନ୍ତ୍ରୀ ଆସି ଦରଜି ପାଖରେ ପହଞ୍ଚିଗଲେ। ଦରଜି ତ ଶୋଇଥାଏ। ମନ୍ତ୍ରୀ ତା'ପାଇଁ ଅପେକ୍ଷା କଲେ। ସେ ନିଦରୁ ଉଠୁ ଉଠୁ ଏତେ ଲୋକଙ୍କୁ ଦେଖି ଡର ଦେଖାଇ କହିଲା, "ଗୋଟେ ରାଜ୍ୟକୁ ଯେତେବେଳେ ଆସିଛି, ଏଠି କ'ଣ କରିପାରେ ବୋଲି ବସି ଭାବୁ ଭାବୁ ଟିକିଏ ଆଖି ପଡ଼ିଯାଇଥିଲା। କ'ଣ ତୁମ ରାଜ୍ୟର ଖବର? ସବୁ ଭଲ ..?"

ଏ କଥା ଶୁଣି ମନ୍ତ୍ରୀ ଏଥର ତାକୁ ରାଜାଙ୍କ ପ୍ରସ୍ତାବଟି ଦେଲେ। ଦରଜି କାହିଁକି ସେଥିରେ ଅମଙ୍ଗ ହୁଅନ୍ତା। ସେ କହିଲା, "ଠିକ୍ ଅଛି। କିଛି ଦିନ ମଣିମାଙ୍କ ସେବାକରି ଚାଲିଯିବା।" ଫଳରେ ସେହିଦିନୁ ସେ ରାଜାଙ୍କ ନଅରରେ ଆରାମରେ ରହିଗଲା। ତା ପାଇଁ ରହିବାଘର, ଚାକରବାକର, ଲୁଗାପଟା, ଖାଇବାପିଇବା ସବୁ ଖଞ୍ଜିଦିଆଗଲା। ସେ ସବୁଦିନ ସୈନ୍ୟଙ୍କ ଛାଉଣୀକୁ ଯାଇ 'ହେ, ଇମିତି କର; ହେ, ସିମିତି କର' କହି ଗୁଡ଼ାଏ ଗର୍ଜନ କରି ପକାଇଆସେ; ଘରେ ମଜାମାରି ଶୁଏ। କିନ୍ତୁ ଏପରି କିଛିଦିନ ଯିବାପରେ ସୈନ୍ୟମାନେ ତା ପ୍ରତି ବିମୁଖ ହୋଇଗଲେ। କିନ୍ତୁ ତା ଜାମା ଛାତିରେ ସେହି ଯେଉଁ 'ଏକାମାଡ଼କେ ସାତ!' ପଟିଟି ଲାଗିଥାଏ, ସେଇଟି ଦେଖିଦେଲାମାତ୍ରେ ସବୁରି କଲିଜା ଥରିଉଠେ। ଏ ତ ଏକାମାଡ଼କେ ସାତ-ସାତଟାଙ୍କୁ ଖତମ୍ କରିଦେବ, ଏ ଲୋକକୁ ବିରୋଧ କରିବେ କିପରି? ସୈନ୍ୟମାନେ ଶେଷକୁ ଏକଜୁଟ ହୋଇ ଦିନେ ରାଜାଙ୍କୁ ଦେଖାକଲେ। କହିଲେ, "ମଣିମା, ଛାମୁଙ୍କୁ ତ ଏତେ ବଡ଼ ବୀର ମିଳିଲାଣି; ଆମଠି ଆଉ କି ବା କାମ! ଆମକୁ ଏଥର କାମରୁ ବିଦାୟ କରିଦିଅନ୍ତୁ।" ରାଜା ସେମାନଙ୍କର ଅସନ୍ତୋଷର କାରଣ ବୁଝିଗଲେ। କିନ୍ତୁ ସେ ସେମାନଙ୍କୁ ଯେତେ ବୋଧଶୋଧ

କଲେ ସେମାନେ ଶୁଣିଲେ ନାହିଁ, ଏକା ଜିଦ୍ ଧରି ବସିଲେ– ହୁଏତ ସେହି 'ଏକାମାଡ଼କେ ସାତ!'ବାଲା ଯାଉ; ନଚେତ୍ ସେମାନେ ଯାଆନ୍ତୁ। ଅସଲ କଥା ହେଲା, ସେ ଯେତେ ବଡ଼ ବୀର ହେଲେ ବି ଏଡ଼ିକି ଟିକିଏ ମଣିଷ; ତା ତଳେ ସେମାନେ କାମ କରିବାକୁ ନାରାଜ। ରାଜା ବଡ଼ ଅଡୁଆରେ ପଡ଼ିଲେ। ଖାସା ଲୋକଟିଏ ଆଣି ରଖିଲେ ଯେ ସେହି ଜଣଙ୍କ ପାଇଁ ତାଙ୍କର ସାରା ସୈନ୍ୟବାହିନୀଟା ଛାଡ଼ିପକାଇବାକୁ ବସିଛି। କିନ୍ତୁ ଏତେ ବଡ଼ ବୀରକୁ କାମରୁ ହଟାଇବେ ବା କିପରି? ସେ ତ ଏକାମାଡ଼କେ ସାତ-ସାତ ଜଣଙ୍କୁ ଖତମ୍ କରିଦେବ! ତାକୁ ତଡ଼ିବ କିଏ? ଏଭଳି ଲୋକକୁ ବଳରେ ତ ନୁହେଁ, କଳରେ ଜିଣିବା କଥା। ତେଣୁ ରାଜା ମନ୍ତ୍ରୀମାନଙ୍କ ସହିତ ସଲାସୂତର କରି ଗୋଟିଏ ଉପାୟ ଠିକ୍ କଲେ।

ତା ପରଦିନ ସେ ଦରଜି ଟୋକାକୁ ପାଖକୁ ଡକାଇ କହିଲେ, "ତୁମେ ତ ଏତେ ବଡ଼ ବୀର। ଏତେଦିନ ଗଲା, ଆମେ ତୁମଦେଇ କିଛି କରାଇପାରିଲୁ ନାହିଁ। ବର୍ତ୍ତମାନ ଯଦି ଗୋଟିଏ ଉପକାର କରନ୍ତ, ତେବେ ମୋ ରାଜ୍ୟର ଭାରି ମଙ୍ଗଳ ହୁଅନ୍ତା। ସେଥିପାଇଁ ତୁମକୁ ଉପଯୁକ୍ତ ପୁରସ୍କାର ବି ମିଳିଯାଆନ୍ତା।"

ଦରଜି ଟୋକା କହିଲା, "ମଣିମା, ମୋର କୌଣସି କାମକୁ ଡର ନାହିଁ। କଣ କରିବାକୁ ପଡ଼ିବ କହନ୍ତୁ; କି ପୁରସ୍କାର ମିଳିବ, ତା ବି କୁହନ୍ତୁ।"

ରାଜା କହିଲେ, "ଆମ ଗଡ଼କୁ ଲାଗି ଯେଉଁ ବଡ଼ ବଣଟା ଦେଖୁଛ, ସେ ବଣରେ ଯୋଡ଼ାଏ ଅସୁର ଆସି ରହିଛନ୍ତି। ସେ ଦି'ଟା ଆମ ରାଜ୍ୟ ଲୋକଙ୍କୁ ବଡ଼ ହନ୍ତସନ୍ତ କରିସାରିଲେଣି। ପ୍ରତିଦିନ ଚୋରି ଡକେଇତି କରି ମୋ ରାଜ୍ୟର ବହୁ କ୍ଷତି କଲେଣି। ଆମେ ସେ ଦି'ଟାଙ୍କୁ କୌଣସିମତେ ପାରୁନୁ। ତୁମେ ଯଦି ସେ ଦି'ଟାଙ୍କୁ ମାରିଦିଅନ୍ତ, ତେବେ ଆମେ ଭାରି ଉପକୃତ ହୁଅନ୍ତୁ। ପୁରସ୍କାର ସ୍ୱରୂପେ ତୁମକୁ ମୋ ରାଜ୍ୟରୁ ଅଧେ ଦେଇଦିଅନ୍ତି; ତୁମ ସହିତ ମୋ ଝିଅକୁ ବିବାହ କରାଇଦିଅନ୍ତି। ହଁ, ତୁମକୁ ସାହାଯ୍ୟ କରିବାଲାଗି ମୁଁ ଶହେ ଘୋଡ଼ସବାର ସୈନ୍ୟ ଦେଉଛି; ସାଙ୍ଗରେ ନେଇ କାମଟା କରିଦିଅ।"

ରାଜା ଭାବିଥିଲେ, ଦରଜି ଟୋକାକୁ ଅସୁରମୁହଁକୁ ପଠାଇଦେଲେ କାମ ଶେଷ; ଅସୁର ଖାଇଯିବେ ଯେ, ଆଉ ପୁଅର ହାଡ଼ ଗୋଡ଼ ବି ବାକିରଖିବେ ନାହିଁ। କିନ୍ତୁ ରାଜାଙ୍କ କଥା ଶୁଣି ଦରଜି ଟୋକା କହିଲା, "ମଣିମା! ମୋତେ ଚିନ୍ତା କରନ୍ତୁ ନାହିଁ। ଏଇଟା ମୋ ବାଆଁ ହାତର କାମ। ଯେ ଏକାମାଡ଼କେ ସାତ-ସାତଟାଙ୍କୁ ଖତମ୍ କରିଦେଇପାରେ, ତାକୁ ଦିଇଟା ଅସୁର ମାରିବାକୁ କେତେ ସମୟ ଲାଗିବ, କହିଲେ? ସେ ଦି'ଟା ମତେ ଏକା ନିଅଣ୍ଟ– ଶହେ ସୈନ୍ୟ କିବା ଦରକାର। ଛାମୁ ଯଦି ଚାହୁଁଛନ୍ତି, ତେବେ ସେମାନଙ୍କୁ ମୋ ସହିତ ପଠାନ୍ତୁ।

ମୁଁ କାଲି ସକାଳେ ମୁହଁ-ଅନ୍ଧାର ବେଳକୁ ବାହାରିପଡୁଛି।''

ତା ପରଦିନ ରାତି ପାହାନ୍ତିଆରୁ ଦରଜି ଟୋକା ଘୋଡ଼ସବାର ସୈନ୍ୟଙ୍କୁ ନେଇ ବଣକୁ ଚାଲିଗଲା। ବଣଧାରରେ ସୈନ୍ୟଙ୍କୁ କହିଲା, ''ବୁଝିଲ, ବହୁ ଲୋକରେ ମୂଷା ମରେନି। ତୁମେ ଏ ବାହାରେ ଥାଅ, ମୁଁ ଭିତରକୁ ଯାଉଛି। ମୁଁ ଏକା ଏକା ସେ ଦି'ଟାଙ୍କୁ ଖତମ୍ କରିଦେବି। ମୋ ଡାକରା ପାଇଲେ ତୁମେ ଭିତରକୁ ଆସିବ।''

ଘୋଡ଼ସବାର ସୈନ୍ୟମାନେ ତ ଅସୁର ନାଆଁ ଶୁଣିବାବେଳୁ ଡରିମରି ଆସିଥିଲେ। ଏବେ ବଣଭିତରକୁ ଯିବା ଦରକାର ନାହିଁ ଦେଖି ଆରାମରେ ଠିଆହୋଇଗଲେ। ପୁଣି ମନେମନେ ଖୁସି ହୋଇଗଲେ ଯେ ଆଜି ଦରଜି ଟୋକାକୁ ନିଶ୍ଚୟ ଅସୁର ଖାଇଯିବ। କିନ୍ତୁ ଦରଜି ଟୋକା, ଭାରି ତରକା। ସେ ତା ସାଙ୍ଗରେ ଗୋଟିଏ ଥଳି ନେଇଥାଏ। ଥଳିରେ ଥଳିଏ ଗୋଡ଼ି ପଥର ଧରି ଜଙ୍ଗଲ ଭିତରେ ଛପିଛପିକା ବୁଲୁ ବୁଲୁ ଦେଖିଲା, ଅସୁର ଦିଇଟା ଗୋଟିଏ ଝଙ୍କାଳିଆ ଗଛମୂଳେ ଶୋଇଚ୍ଛନ୍ତି। ବେଳ ଆସି ଉଇଁଲାଣି; ତଥାପି ସେ ଦିଇଟାଙ୍କ ନିଦ ଭାଙ୍ଗି ନାହିଁ। ଦରଜି ଟୋକା ଖୁବ୍ ସାବଧାନରେ ସେହି ଗଛ ଉପରକୁ ଚଢ଼ିଗଲା ଏବଂ ଗୋଟିଏ ଝଙ୍କାଳିଆ ଡାଳରେ ଲୁଚି ବସି ତଳେ ଶୋଇଥିବା ଦୁଇ ଅସୁରଙ୍କ ଭିତରୁ ଜଣକ ଉପରକୁ ଗୋଟିଏ ଗୋଡ଼ି ପକାଇଦେଲା। ମାଛିଟାଏ କି ମଶାଟାଏ କାମୁଡ଼ିଦେଲା ଭାବି ଅସୁର ପିଠିଟା କୁଣ୍ଡାଇଦେଇ କଡ଼ ଲେଉଟାଇ ପୁଣି ଶୋଇପଡ଼ିଲା। ଦରଜିଟୋକା ତା ଉପରକୁ ପୁଣି ଗୋଟିଏ ଗୋଡ଼ି ପକାଇଦେଲା। ଏଥର ଅସୁର ଟିକିଏ ବ୍ୟସ୍ତହୋଇ ଆଉ ଥରେ କଡ଼ ଲେଉଟାଇଦେଲା। ଦରଜିଟୋକା ତା ଉପରକୁ ପୁଣି ଥରେ ଏକ ଗୋଡ଼ି ଆହୁରି ଟିକିଏ ଜୋର୍‌ରେ ମାରିଦେଲା। ଅସୁର ଏଥର ଉଠିପଡ଼ି ଆର ଅସୁରକୁ ଠେଲିଦେଇ କହିଲା, ''ଶୋଇଆସୁନି କି ରେ? କାହିଁକି ମିଛଟାରେ ମତେ କହୁଣି ମାରୁଛୁ?'' ଆର ଅସୁର ନିଦବାଉଳିରେ କହିଲା, ''ହାତଟା ବାଜିଯାଇଥିବ– ମୁଁ ଏବେ ଟିକିଏ ଘୁଞ୍ଚିଯାଉଛି।'' ଦି'ଅସୁର ଶୋଇଛନ୍ତି; ଏଥର ଦରଜିଟୋକା ଦ୍ୱିତୀୟ ଅସୁର ପିଠିମୁଣ୍ଡା ଦେଖି ଗୋଟିଏ ଟେକା ମାରିଦେଲା। ଦ୍ୱିତୀୟ ଅସୁର ଉଠିବସି ପ୍ରଥମ ଅସୁରକୁ ଧକ୍କାଏ ମାରି କହିଲା, ''କାହିଁକି ବେ ମତେ ମାରୁଛୁ?'' ପ୍ରଥମ ଅସୁର କହିଲା, ''ନା ମ, ହାତ ବାଜିଯାଇଥିବ– ଦେ ଶୋଇପଡ଼।''

ଦରଜି ଟୋକା ଏପରି ଯା'କୁ ଛାଡ଼ି ତାକୁ, ତାକୁ ଛାଡ଼ି ଯା'କୁ ଟେକାମାଡ଼ କରିବା ଫଳରେ କିଛି ସମୟ ଭିତରେ ପ୍ରଥମ ଅସୁର ଉଠି 'ତୁ କାହିଁକି ମତେ ମାରିଲୁ' କହି ଦ୍ୱିତୀୟ ଅସୁରକୁ ଦି'ଚାପଡ଼ ଦେଲା। ଦ୍ୱିତୀୟ ଅସୁର ଉଠି 'ତୁ କାହିଁକି ମତେ ମାରିଲୁ' କହି ପ୍ରଥମ ଅସୁରକୁ ଦି'ମୁଥ ଦେଲା। ତାହୁଁ ତାହୁଁ

ଦୁଇ ଅସୁରଙ୍କର କଳି ଚାପଡ଼ ମୁଥରୁ ବଢ଼ି ବଢ଼ି ପିଟାପିଟିରେ ପରିଣତ ହୋଇଗଲା। ଠେଙ୍ଗାବାଡ଼ି ଚାଲିଲା। ମହାମହା ଦ୍ରୁମମାନ ଉପୁଡ଼ାଇ ଏ ତାକୁ, ସେ ଯା'କୁ ପିଟିବାକୁ ଲାଗିଲେ। ଦିହିଁଙ୍କର ଦକାଚକଟା ମାରପିଟରେ ଜଙ୍ଗଲ ଭିତରେ ଖଣ୍ଡେ ଜମି ଚଷିହୋଇଗଲା ଜାଣ। ଦରଜି ଟୋକା ଗଛଉପରେ ବସି ଦିଅଁଙ୍କୁ ଡାକୁଥାଏ, "ହେ ଦିଅଁ, ଏ ଦିଇଟା ଆସି ଏ ଗଛ ଉପରେ ଆଉ ନ ପଡ଼ନ୍ତୁ। ଦିହେଁ ଆସି ଯଦି ଏ ଗଛରେ ହାତ ଦିଅନ୍ତି, ଗଛ ଦୋହଲି ଉଠିବ ଯେ ମୁଁ ତଳେ ପଡ଼ିବି; ସେତେବେଳେ ଆଉ ମୋ ପ୍ରାଣ ରହିବ ନାହିଁ।" ସେପଟେ ଅସୁର ଦୁଇଟା ବାଡ଼ିଆବାଡ଼ି ହୋଇ ଇଏ ତା ମୁଣ୍ଡ ଫଟାଇଦେଲା ଓ ସେ ଯା' ମୁଣ୍ଡ ଫଟାଇଦେଲା ଯେ ଦିହିଁଙ୍କି ଦିହେଁ ମରି ପଡ଼ିଲେ।

କାମ ହାସଲ ହୋଇଗଲା ଦେଖି ଦରଜି ଟୋକା ଗଛରୁ ଓହ୍ଲାଇ ବଣଭିତରୁ ବାହାରିଆସିଲା। ବାହାରେ ଆସି ସୈନ୍ୟମାନଙ୍କୁ କହିଲା, "ସେ ଅସୁର ସିନା ଦି'ଟା, ହେଲେ ଭାରି ଟାଣୁଆ ଅସୁରଗୁଡ଼ାକ। ମୁଁ ବୋଲି ସେ ଦିଇଟାଙ୍କୁ ମାରିପାରିଲି; ନ ହେଲେ ସେଗୁଡ଼ାକ ମରିନଥାନ୍ତେ। ଗୋଟାଏ ଗୋଟାଏ ମହାଦ୍ରୁମ ଉପୁଡ଼ାଇ ପିଟିବାରୁ ଯାଇ ସେ ଦି'ଟାଙ୍କର ମୁଣ୍ଡ ଫାଟିଲାଟି ! ଯାଉନା – ଦେଖିବ।"

ଘୋଡ଼ସବାର ସୈନ୍ୟମାନେ ଦରଜି ଟୋକା କଥା ସତ କି ମିଛି ଜାଣିବା ଲାଗି ବଣ ଭିତରେ ପଶି ସବୁ ଦେଖିଲେ। ମଲା ଅସୁର ଦି'ଟାଙ୍କର ରୂପ ଦେଖି ସେମାନେ ଛାନିଆ ହୋଇଗଲେ। ମନେ ମନେ ସେମାନେ ଦରଜି ଟୋକାର ପ୍ରଶଂସା କରି ଗଡ଼କୁ ଫେରିଲେ। ରାଜା ସକଳ ଖବର ପାଇ ଆଶ୍ୱସ୍ତ ହେଲେ ସତ, ହେଲେ ଯେତେବେଳେ ଦରଜି ଟୋକା ଯାଇ କହିଲା, "ମଣିମା, ମୋ କାମ ସରିଲା, ଏଥର ଛାମୁ ନିଜ ପଣ ରଖନ୍ତୁ"; ସେତେବେଳେ ରାଜା ବଡ଼ ଅଡୁଆରେ ପଡ଼ିଗଲେ। କ'ଣ କରି ଏ ଲୋକଟାକୁ ଅନ୍ତର କରିବେ, ତାହା ଭାବିବସିଲେ। ଏଥର ତାଙ୍କୁ ଆଉ ଗୋଟିଏ ବୁଦ୍ଧି ଦିଶିଲା। ସେ ରାଜ୍ୟର ଆଉ ଗୋଟିଏ ବଣରେ ଗୋଟିଏ ଏକଶିଙ୍ଗିଆ ଘୋଡ଼ା ଥାଏ ଯେ, ସେଇଟା ତା ଶିଙ୍ଗରେ ଅନେକ ଗାଈ-ଗୋରୁଙ୍କୁ ଟାଳି ମାରିଦେଉଥାଏ। କେତେ ଲୋକଙ୍କୁ ବି ଘାଇଲା କରିଦେଇଥାଏ। ରାଜା ଦରଜି ଟୋକାକୁ କହିଲେ, "କାମଟା କରିଦେଲ ସତ, ହେଲେ ଆଉ ଗୋଟିଏ କାମ ନ କଲାଯାଏଁ ମୁଁ ବାହାଘର କରୁନାହିଁ ଜାଣ !" ଏହା କହି ରାଜା ଦରଜି ଟୋକାକୁ ସେହି ଏକଶିଙ୍ଗିଆ ଘୋଡ଼ାକୁ ବାନ୍ଧିଆଣିବାକୁ ବରାଦ ଦେଲେ। ସେ ଭାବିଥିଲେ ଯେ ଦରଜି ଟୋକା ନିଶ୍ଚୟ ଏକଶିଙ୍ଗିଆ ଘୋଡ଼ା ହାବୁଡ଼ରେ ପଡ଼ି ମରିବ।

କିନ୍ତୁ ଦରଜି ଟୋକା କହିଲା, "ମଣିମା, ଇଏ ଗୋଟିଏ କାମ; ଏଥିପାଇଁ ପୁଣି ମତେ ପଠାଉଛନ୍ତି !! ମୁଁ ହେଲି ଏକାମାଡ଼କେ ସାତ ଖତମ କରିବା ବୀର।

ମତେ ଗୋଟାଏ ଘୋଡ଼ା ଆଣିବାକୁ ପଠାଉଛନ୍ତି ?''

ରାଜା କହିଲେ, ''ହଁ, ତୁମକୁ ସାହାଯ୍ୟ କରିବାଲାଗି ମୁଁ ଶହେ ଜଣ ସୈନ୍ୟ ବି ଦେଉଛି। ଯଦି ଏ କାମଟା ହାସଲ କରି ଫେରିବ, ତେବେ ନିଶ୍ଚୟ ବାହାଘର କରାଇଦେବି।''

ଦରଜି ଟୋକା 'ଠିକ୍ ଅଛି' କହି ଘୋଡ଼ାବନ୍ଧା ପଘା ଓ ଗୋଟିଏ କୁରାଢ଼ି ଧରି ବଣକୁ ଚାଲିଗଲା। ତାକୁ ସାହାଯ୍ୟ କରିବା ଲାଗି ଯେଉଁ ସୈନ୍ୟମାନେ ଯାଇଥିଲେ, ସେମାନଙ୍କୁ ବଣଧାରରେ ଜଗାଇଦେଇ ସେ ଏକା ଏକା ବଣ ଭିତରେ ପଶିଗଲା।

ତାର ଆଉ ଏକଶିଙ୍ଗିଆ ଘୋଡ଼ାକୁ ଖୋଜିବା ଦରକାର ପଡ଼ିଲା ନାହିଁ। ଘୋଡ଼ାଟି ସେହି ପାଖରେ କୋଉଠି ଥିଲା, ଦରଜି ଟୋକାକୁ ଦେଖୁ ଦେଖୁ ସେ ସଁ ସଁ ହୋଇ ତାକୁ ଭୁସିବାକୁ ଦୌଡ଼ିଆସିଲା। ଦରଜି ଟୋକା ନିଜକୁ ବଞ୍ଚାଇବାଲାଗି ଦୌଡ଼ିନଯାଇ ଗୋଟିଏ ବଡ଼ ଗଛ ପାଖରେ ଠିଆହୋଇ ରହିଲା। ଏକଶିଙ୍ଗିଆ ଘୋଡ଼ା ତାର ଖୁବ୍ ପାଖରେ ପହଞ୍ଚିଯିବା ପୂର୍ବରୁ ସେ ଚଟ୍‌କରି ଗଛର ପଛପଟକୁ ବୁଲିଗଲା। ସେପଟୁ ଛୁଟିଆସୁଥିବା ଘୋଡ଼ା ନିଜକୁ ସମ୍ଭାଳି ନପାରି ସିଧା ଆସି ସେହି ଗଛଗଣ୍ଡିରେ ଶିଙ୍ଗ ଭୁସିଦେଲା; ଫଳରେ ଗଛଗଣ୍ଡିରେ ଏତେ ଜୋରରେ ତା ଶିଙ୍ଗଟା ଗଳିଗଲା ଯେ ସେ ଆଉ ସେଇଟାକୁ ଟାଣି ବାହାର କରିପାରିଲା ନାହିଁ। ଘୋଡ଼ା କାବୁ ହୋଇଗଲା ଦେଖି ଦରଜି ଟୋକା ତା ପାଖକୁ ଚାଲିଆସି ତା ବେକରେ ପଘା ବାନ୍ଧିଦେଲା। ଘୋଡ଼ାକୁ ଗଛଗଣ୍ଡିରେ ଏପରି ବାନ୍ଧିସାରିବା ପରେ ସେ ତା କୁରାଢ଼ିରେ ଘୋଡ଼ାର ଶିଙ୍ଗ କାଟିପକାଇଲା। ତା ପରେ ବଣ ବାହାରକୁ ଆସି ସୈନ୍ୟଙ୍କୁ କହିଲା, ''ଆରେ ହେ, ମୁଁ ସେ ଘୋଡ଼ାର ଶିଙ୍ଗ କାଟି ତାକୁ ଗୋଟେ ଗଛଗଣ୍ଡିରେ ବାନ୍ଧିଦେଲିଣି! ଆସ, ତୁମେ ତାକୁ ତୁମ ରାଜାଙ୍କ ପାଖକୁ ନେଇଯିବ। ମୁଁ ତୁମର ଏ ରାଜ୍ୟରେ କିଛି କାମଦାମ କରିବାକୁ ନ ପାଇ ବସି ବସି ଅଳସୁଆ ହୋଇଗଲିଣି। ରାଜା ମୋ ଭଳି ଏକାମାଡ଼କେ ସାତଙ୍କୁ ଖତମ୍ କରିବା ଲୋକଙ୍କୁ ଗୋଟାଏ ଦୁଇଟାଙ୍କୁ ମାରିବାକୁ ଦେଉଛନ୍ତି। ମୁଁ ଯାଏ ବଣରେ ବୁଲି ବୁଲି ଆଉ ଚାରି-ଛଅଟା ଅସୁରଙ୍କୁ ମାରି ଦେଇ ଆସେ ଯେ, ଦେହଟା ଫୂର୍ତ୍ତି ଲାଗିବ। ତୁମେ ସେ ଘୋଡ଼ାଟାକୁ ନଅରକୁ ନେଇଯାଅ।''

ସୈନ୍ୟମାନେ ବଡ଼ କଷ୍ଟରେ ଘୋଡ଼ାଟିକୁ ରାଜାଙ୍କ ନଅର ପର୍ଯ୍ୟନ୍ତ ଟଣାଇନେଲେ। ଏକଶିଙ୍ଗିଆ ଦୁଷ୍ଟ ଘୋଡ଼ାଟା ସାବାଡ଼ ହୋଇଗଲା ଦେଖି ସମସ୍ତେ ଖୁସି ହୋଇଗଲେ। କିନ୍ତୁ କ'ଣ କରି ଦରଜି ଟୋକାକୁ ଅନ୍ତର କରିହେବ ରାଜା ବୁଝିପାରିଲେ ନାହିଁ; ଏପରି ଗୋଟାଏ ଅଜ୍ଞାତକୁଳଶୀଳ ହାତରେ ନିଜ ଜେମାକୁ ଟେକିଦେବାକୁ ତାଙ୍କର

ମନ ଟେକୁ ନଥାଏ। ତା ପରଦିନ ଦରଜି ଟୋକା ଯେତେବେଳେ ତାଙ୍କୁ କହିଲା, "ମଣିମା, ମୋ କାମ ତ ସରିଲା; ଏଥର ଆପଣଙ୍କ ପଣ ଆପଣ ରଖନ୍ତୁ;" ସେତେବେଳେ ରାଜା କହିଲେ, "ଶୁଣ, ତୁମେ ଆଉ ଗୋଟିଏ କାମ କରିଦିଅ, ତା' ପରେ ମୋ ପଣ ମୁଁ ନିଶ୍ଚୟ ରକ୍ଷା କରିବି।"

ଦରଜି ଟୋକା କହିଲା, "ଛାମୁ ପ୍ରତିଦିନ ଏପରି ଗୋଟିଏ ଗୋଟିଏ ଛୋଟକାଟିଆ କାମ ଦେଇ ମତେ ଅଳସୁଆ କରିଦେଉଛନ୍ତି। ଛାମୁ ଜାଣନ୍ତି; ମୁଁ ଏକାମାଡ଼କେ ସାତ ଖତମ୍ କରେ। ମତେ ସିମିତି କିଛି କାମ ଦିଅନ୍ତୁ— ତା ହେଲେ ଦେଖିବେ ମୋ କରାମତି।"

ରାଜା କହିଲେ, "ସେ ସାତଟା କଥା ଛାଡ଼। ଆଗ ଏ ଗୋଟାକୁ ସାବାଡ଼ କଲ ଦେଖି।"

—"କାହାକୁ ?"

—"ଗୋଟାଏ ଦନ୍ତା ବାରହା ଆସି ଆମ ଲୋକଙ୍କୁ ଭାରି ହଇରାଣ କଲାଣି। କ୍ଷେତ-ବାରିରେ ଫସଲ ରଖାଇଦେଉନି। ମଣିଷ ଦେଖିଲେ ଚିରି ଦି'ଫାଳ କରିଦେଉଛି। ତୁମେ ଯଦି ସେଇଟାକୁ ଜିଅନ୍ତା ବାନ୍ଧିପକାନ୍ତ, ତେବେ ଯାଇ ତୁମ ବୀରପଣିଆ ଜାଣନ୍ତି।"

ରାଜା ଭାବିଥିଲେ, ଦରଜି ଟୋକା ଯାହା କରିଥିଲା, କରିଥିଲା; ଜିଅନ୍ତା ବାରହା ଧରିବା କାମରେ ନିଶ୍ଚୟ ହାରମାନିବ। ବାରହା ହାବୁଡ଼ରୁ ମୋଟେ ଖସିପାରିବନାହିଁ। କିନ୍ତୁ ଦରଜି ଟୋକା ଫୁଟୁକି ମାରି କହିଲା, "ଏଇଟା ଗୋଟେ ପିଲାଖେଳ। ମୁଁ ଏ କାମ ଆଖିପିଛୁଳାକେ କରିଦେବି ମଣିମା! ଏଥକୁ ଚିନ୍ତା କରନ୍ତୁ ନାହିଁ।" ଏପରି କହି ସେ ତା'ପରଦିନ ସକାଳୁ ବାରହା ଧରିବାକୁ ବାହାରିପଡ଼ିଲା। ସୈନ୍ୟଙ୍କୁ କହିଲା, "ତୁମେ ସବୁ ମୋ ସାଙ୍ଗରେ ଆସ ନାହିଁ। ମୁଁ ସେ ବଣମୁଣ୍ଡ ଭଙ୍ଗା ଗିର୍ଜା ପାଖରେ ବସିଛି; ତୁମେ ଖାଲି ବାରହାଟାକୁ ଆରପଟୁ ହୁରୁଡ଼େଇ ଦେଇ ଏପଟକୁ ପଠାଇଦିଅ।"

ବାରହା ମୁହଁରେ ପଡ଼ି ସୈନ୍ୟମାନେ ପୂର୍ବରୁ ବହୁତ ଦିକ୍‌ଦାର ହୋଇଥାନ୍ତି। ଏଥର ବାରହା ମୁହଁରେ ପଡ଼ିବାକୁ ହେବନାହିଁ ଜାଣି ସେମାନେ ମନଖୁସିରେ ବଣ ଆରପଟକୁ ଯାଇ ଢୋଲ ମାଦଳ ମହୁରି ପେଁକାଳି ବଜାଇ ବାରହା ହୁରୁଡ଼ାଇଲେ। ଏ ଭିତରେ ଦରଜି ଟୋକା ଗିର୍ଜାପାଖ ବଣରେ ପଇଁତରା ମାରୁଥାଏ। ଆରପଟୁ ଘଉଡ଼ା ଖାଇ ବାରହା ଏପଟକୁ ଦୌଡ଼ି ଆସୁ ଆସୁ ଦରଜି ଟୋକାକୁ ଦେଖିଦେଲା। ତା ରାଗ ପଞ୍ଚମକୁ ଉଠିଗଲା। ସେ ମୁହଁ ଫେଣେଇ ଦାନ୍ତ କଟମଟ କରି ସଁ ସଁ ହୋଇ ତା ଆଡ଼କୁ ମାଡ଼ିଆସିଲା। ଦରଜି ଟୋକାର ଗୋଡ଼ହାତ ତ ଭାରି ଚଞ୍ଚଳ। ସେ ଡିଆଁ ମାରି ଗିର୍ଜାପାଖକୁ ଆସିଲା। ବାରହା ବି ତୀରବେଗରେ

ଗିର୍ଜାଆଡ଼କୁ ଛୁଟିଲା। ଦରଜି ଟୋକା ଆଖିପିଛୁଳାକେ ଗିର୍ଜା ଭିତରେ ପଶିଯାଇ ଭିତରପଟୁଆ ଝରକା ଉପରକୁ ଉଠିଗଲା। ଭଙ୍ଗା ଝରକାରେ ଛଡ଼ କି କବାଟ କିଛି ନଥାଏ। ସେ ଝରକା ଉପରେ ଛପି ଯାଉ ଯାଉ ବାରହା ବିକଟାଳ ଗର୍ଜନ କରି ତାକୁ ଚିରି ଫାଡ଼ିଦେବାଲାଗି ଗିର୍ଜା ଭିତରେ ପଶିଗଲା। ଦରଜି ଟୋକା ସେହି ମୁହୂର୍ତ୍ତରେ ଝରକା ଉପରୁ ବାହାରକୁ ଡେଇଁପଡ଼ି ଚଟ୍‌କିନା ଯାଇ ଗିର୍ଜା ଦରଜାଟା ବାହାରପଟୁ ବନ୍ଦ କରିଦେଲା। ବାରହାପରିକା ଓଜନିଆ ଜୀବ କ'ଣ ଆଉ ଘରଭିତରୁ ଝରକା ଉପରକୁ ଡେଇଁ ପାରନ୍ତା କି? ସେଇଟା ଆଉ ବାହାରିବାକୁ ବାଟ ନ ପାଇ ଗିର୍ଜା ଘର ଭିତରେ ଖାଲି ରାମ୍ପୁଡ଼ି-କାମୁଡ଼ି ହେଲା।

ବଣୁଆ ବାରହାକୁ ଏପରି ଭାବରେ ବନ୍ଦୀ କରିଦେଇ ଦରଜି ଟୋକା ଆସି ରାଜାଙ୍କ ପାଖରେ କହିଲା, "ମଣିମା, କାମ ଫତେ। ଛାମୁଁ ଆଉ ବିଳମ୍ବ କରନ୍ତୁ ନାହିଁ।"

ତା ବୀରତ୍ୱ ଦେଖି ରାଜା ଏଥର ସତରେ ମୋହିତ ହୋଇଗଲେ। ସାଧାରଣ ଲୋକଟାଏ ପରି ଦେଖାଯାଉଥିଲେ କ'ଣ ହେଲା, ସତରେ ବୀରଟାଏ ଭାବି ରାଜା ତା ସହିତ ନିଜ ଝିଅର ବାହାଘର ଆୟୋଜନ ଆରମ୍ଭ କରିଦେଲେ। ସେ ଯଦି ଜାଣିଥାନ୍ତେ ଯେ 'ଏକାମାଡ଼କେ ସାତ' ଖତମ୍ କରେ ବୋଲି ଗର୍ବ କରୁଥିବା ଏ ବୀର ପ୍ରକୃତରେ ବୀର ନୁହେଁ, ଗୋଟାଏ ସାମାନ୍ୟ ଫିସାଦିଆ ଦରଜି ଟୋକା, ତେବେ ସେ ମୋଟେ ବାହାଘର କଥା ଉଠାନ୍ତେ ନାହିଁ।

ଯାହାହେଉ, ରାଜଜେମା ସହିତ ଦରଜି ଟୋକାର ବାହାଘର ହୋଇଗଲା। ରାଜା ନିଜ ବଚନ ରକ୍ଷାକରି ତାକୁ ନିଜ ରାଜ୍ୟର ଅଧେ ଦେଇଦେଲେ। କିନ୍ତୁ ରାଜଜେମା ତା ସ୍ୱାମୀକୁ ଯେପରି ବୀର ବୋଲି ଭାବିଥିଲା, ଦେଖିଲା, ପ୍ରକୃତରେ ସେପରି ବୀର ନୁହେଁ। ଚାଲିଚଳଣ, କଥାଭାଷା, ଢଙ୍ଗରଙ୍ଗରୁ ମନେହେଲା, ସେ ରଜାଘର କାଇଦା-କଟକଣା କିଛି ଜାଣେନି। ତେଣୁ ବାପା ଗୋଟାଏ ଛୋଟଲୋକକୁ ଧରିଆଣି ଦ୍ୱାଇଁ କଲେ ବୋଲି ଜେମା ମନମାରି ରହିଥାଏ। ସେ ରାତିରେ ଶୁଣେ, ତା ସ୍ୱାମୀ ନିଦରେ ଶୋଇ ବିଳିବିଳେଇ ହେଉଛି– "ଏ ଟୋକା, ସେ ଜାମାର ବୋତାମ ଲଗାଇଦେ; ଏ ଜାମାର କାଛାମରା ସାରିଦେ; ହେଇଟି ସେ ପାଇଜାମାର ଆଣ୍ଠୁ ପାଖ ଚିରା ଜାଗାରେ ଟିକିଏ ତାଳି ପକାଇଦେ। ହାତ ଫୁର୍ତ୍ତି କରୁନୁ କାହିଁକି? ମାରିବି ଧରି ବଦ୍‌ମାସକୁ ଯେ ପିଠିରେ ଗଜବାଡ଼ି ଭାଙ୍ଗିଦେବି ଜାଣିଥା।" –ଏସବୁ ହେଲା ଦରଜି ଦୋକାନର ନିତିଦିନିଆ କଥା। ରାଜଜେମା ନିତି ରାତିରେ ସ୍ୱାମୀ ଏପରି ବିଳିବିଳେଇ ହେଉଛି ଦେଖି ଜାଣିଗଲା ଯେ ଏଇଟା ନିଶ୍ଚୟ ଜଣେ ଦରଜି; ବାରଫିସାଦ କରି ତା ବାପାକୁ ଠକିଛି। ଫଳରେ ଦିନେ ରାତିପାହି ସକାଳ ହେଉ ହେଉ ସେ ଯାଇ ରାଜାଙ୍କୁ ସବୁକଥା

କହି ଲୁହ ଗଡ଼ାଇଲା । ରାଜା ଆପଣା ଅପମାନ କଥା ଆଉ କାହାକୁ କହିବେ ? କେତେ ଜଣ ବିଶ୍ୱାସୀ ଲୋକଙ୍କୁ ଡାକି ଦରଜି ଟୋକାକୁ କିପରି ରାଜ୍ୟରୁ ଅନ୍ତର କରାଯିବ, ସେହି ଉପାୟ ଠିକ୍ କଲେ । ସବୁ ଠିକ୍‌ଠାକ୍ ହୋଇଗଲାରୁ ସେ ଝିଅକୁ ଡାକି କହିଲେ, ''ମାଆ ଲୋ, ଆଜି ରାତିରେ ସେ ଶୋଇପଡ଼ିବାପରେ ତୁ ଚୁପ୍‌କିନା ଆସି ଶୋଇବାଘର କବାଟ ଖୋଲିଦେବୁ । ମୋ ଲୋକ ବାହାରେ ଛକିବସିଥିବେ । ସେମାନେ ଦରଜି ଟୋକାକୁ ଟେକିନେଇ ଗୋଟିଏ ଜାହାଜରେ ବସାଇ ଦୂର ବିଦେଶକୁ ପଠାଇଦେବେ ।''

କିନ୍ତୁ ଏ ଭିତରେ କ'ଣ ହୋଇଥାଏ ନା, ଦରଜି ଟୋକା ରାଜାଙ୍କର ଜଣେ ବିଶ୍ୱାସୀ ଲୋକକୁ ହାତରପାଞ୍ଚ କରି ସାରିଥାଏ । ରାଜାଙ୍କର ଏ ମସୁଧା ବି ତା କାନରେ ଆସି ପଡ଼ିଗଲା । ସେଦିନ ରାତିରେ ସେ ସଅଳ ସଅଳ ଶୋଇପଡ଼ିବାର ବାହାନାକଲା; ହାଇ ଅଳସ ମାରି ଶୋଇପଡ଼ିଲା ଯେ ଘୁଙ୍ଗୁଡ଼ିନାଦରେ ଘର କଂପିଲା । ସେ ନିଘୋଡ଼ ନିଦରେ ଶୋଇଲାଣି ଦେଖି ରାଜାଝିଅ ଯାଇ ଶୋଇବାଘର କବାଟ ଖୋଲିଦେଲା; ତା ପରେ ଶେଯକୁ ଫେରିଆସି କିଛି ନ ଜାଣିଲା ପରି ଶୋଇପଡ଼ିଲା । କିଛି ସମୟ ଯାଇଛି କି ନାହିଁ, ଦରଜି ଟୋକା ବିଳିବିଳେଇ ହେଲା, ''ଏ ଟୋକା ! ଜଲଦି ଜାମାରେ ବୋତାମ ଲଗା । ସେ ପାଇଜାମାରେ ତାଳି ପକା । ବଦମାସ୍ ଡେରି କରନା କହୁଛି; ଡେରି କରିବୁ ତ ପିଠିରେ ଗଜବାଡ଼ି ଭାଙ୍ଗିଦେବି । ଆରେ, ମୁଁ ଏକାମାଡ଼କେ ସାତ-ସାତଟାକୁ ଖତମ୍ କରିଦେବା ବୀର । ଜାଣିନୁ, ମୁଁ ଏକାଟିଆ ଯାଇ ଦି'-ଦିଇଟା ଅସୁରଙ୍କୁ ମାରି ଆସିଲି; ଏକଶିଙ୍ଗିଆ ଘୋଡ଼ାକୁ ବାନ୍ଧି ଆଣିଲି; ବଣୁଆ ବାର୍‌ହାକୁ ବାନ୍ଧିପକାଇଲି । ତୁ ଡେରି କରନା; ମୋ ଶୋଇବାଘର କବାଟପାଖରେ ଏ ଯେଉଁ ଲୋକଗୁଡ଼ାକ ଛକି ବସିଛନ୍ତି, ମୁଁ ଏଙ୍କୁ ଡରେ ? ଏଇନେ ମୁଁ ଜାମାଯୋଡ଼ହୋଇ ବାହାରିପଡ଼ିଲେ ଏକାମାଡ଼କେ ସାତ-ସାତଟାଙ୍କୁ ଖତମ୍ କରିଦେବି ଯେ, ହାତ ଗୋଡ଼ ଚୂନା ହୋଇଯିବ । ମତେ ଜାଣିନାହାନ୍ତି ଏଯାକେ । ଦେ, ହାତ ଫୁର୍ତ୍ତି କର ।''

ତାକୁ ଟେକିନେବାକୁ ବାହାରେ ଯେଉଁ ଲୋକମାନେ ଛକିବସିଥିଲେ ସେମାନେ ତାର ପାଟି ଶୁଣି ପ୍ରାଣବିକଳରେ ସେଠାରୁ ଭାଗିପକାଇଗଲେ । ସେହି ଦିନୁ ତା ବିରୁଦ୍ଧରେ ମୁହଁ ଖୋଲିବାକୁ ବି କାହାର ସାହସ ରହିଲା ନାହିଁ; ଫଳରେ ସେ ମଲାଯାଏଁ ସେଠାରେ ରାଜପଣ କରି ରହିଲା ।

—

# ସୁନାହଂସ

ଜଣେ ଲୋକ ଥାଏ ଯେ, ତାର ତିନିଟା ପୁଅ। ବଡ଼ପୁଅ ଦି'ଟା ଦୁଷ୍ଟ ଯିମିତି, ଧୂର୍ତ୍ତ ସିମିତି। ତାଙ୍କ ପରି ଆପଣାସ୍ୱାର୍ଥୀ ଆଉ ଦୁନିଆରେ କେହି ନଥିବେ। କିନ୍ତୁ ସାନଟି ଭାରି ସରଳ; ପରକୁ ଆପଣାର ପରି ଭାବେ। ବାପ ମାଆ ହେଲେ ଖଟିଖିଆ ଲୋକ। ନିତିଦିନ କାଠ ହାଣି ବିକନ୍ତି; ସେଥିରୁ ଯେଉଁ ଦି'ପଇସା ମିଳେ, ସେଥିରେ ଚଳନ୍ତି। ବଡ଼ ଦି'ପୁଅ ଫନ୍ଦିଫିକର କରି ନିତି ନିତି କିଛି ଆଣନ୍ତି ବୋଲି ବାପମାଆ ସେ ଦିହିଁଙ୍କି ବୁଦ୍ଧିର, ଗୁଣର କହି ଭାରି ଦେଖିପାରନ୍ତି; କିନ୍ତୁ ସାନଟି ସେ କାମକୁ ପାରେନି। ତେଣୁ ବାପମାଆ ତାକୁ ନାଆଁ ଦେଇଥାନ୍ତି ବୋକା ମାଧିଆ।

ଦିନେ ବାପ ଦେହ-ଦୁଃଖରେ ପଡ଼ିଲାରୁ କାଠ ହାଣିବାକୁ ଯାଇପାରିଲାନାହିଁ। ବଡ଼ପୁଅ ମାଆକୁ କହିଲା, ''ମାଆ ଲୋ, ମୋପାଇଁ ଘୋଟଣା ବାଢ଼ିଦେ; ମୁଁ ଘୋଟଣା ନେଇ ବଣକୁ ଚାଲିଯିବି ଯେ ଆଉ ଖାଇବା ପାଇଁ ଘରକୁ ଆସିବାକୁ ପଡ଼ିବ ନାହିଁ। ସକାଳଠୁଁ ସଞ୍ଜଯାଏଁ କାଠ ହାଣି ଶଗଡ଼ରେ ଶଗଡ଼େ କାଠ ନେଇ ଆସିବି।''

ମାଆ ତ ବଡ଼ପୁଅକୁ ଦେଖିପାରେ। ସେ ପୁଅ ପାଇଁ ଆଚ୍ଛାକରି ଘୋଟଣା ବାଢ଼ିଦେଲା। ପୁଅ ଘୋଟଣା ନେଇ କାଠ ହାଣିବ ବୋଲି ବଣକୁ ଚାଲିଗଲା। କିନ୍ତୁ ବଣରେ ପହଞ୍ଚୁ ପହଞ୍ଚୁ ଭାବିଲା, ଆଗ ଖାଇପକାଇବି ଯେ ତା'ପରେ ଦିନଯାକ କାଠ କାଟୁଥିବି ତ କାଟୁଥିବି– ବାଧା ଲାଗିବ ନାହିଁ। ଏପରି ଭାବି ସେ ଘୋଟଣା ଖୋଲି ଖାଇବସିଲା। ଠିକ୍ ସେତିକିବେଳକୁ, କେଉଁଠି ଥିଲା କେଜାଣି, ଜଣେ ବୁଢ଼ା ଆସି ସେଠାରେ ପହଞ୍ଚିଗଲା। ବୁଢ଼ାର ଅଣ୍ଟା ପଡ଼ିଯାଇଥାଏ; ଚମ ଧୂଡୁଧୁଡୁ କରୁଥାଏ, ହାତରେ ବାଡ଼ିଖଣ୍ଡିଏ ଧରିଥାଏ ଯେ, ସେଇଟି ବି ଥରୁଥାଏ। କାଠୁରିଆପୁଅ ଖାଇବାକୁ ଯାଉଛି ଦେଖି ବୁଢ଼ା ନେହୁରା ହୋଇ ମାଗିଲା, ''ବାପା, ମୋ ଆଡ଼ିକି ଟିକିଏ ଚାହାଁ। ଦି'ଦିନ ହେଲା କିଛି ଖାଇନାହିଁ। ମତେ ଦୋଓଟି ଦିଅନ୍ତୁ ନାହିଁ?''

କାଠୁରିଆପୁଅ ବୁଢ଼ାକୁ ଖତେଇ ହୋଇ କହିଲା, ''ଆରେ ଯା ଯା; ମୁଁ ଯାହା ଆଣିଛି, ସେତକ ମୋ ପେଟକୁ ନିଅଣ୍ଟ– ତତେ ଆହୁରି ଏଥିରୁ ଦେବି! ଡାହାଣ କୋଉଠିକାର; କହିଲା ଦି'ଦିନ ହେଲା ଖାଇନାହିଁ!! ପଳା।''

ବୁଢ଼ା ବିଚରା ମୁହଁ ଶୁଖାଇ ପଳାଇଗଲା। କାଠୁରିଆପୁଅ ଖାଇପିଇ ଆରାମ ହୋଇ ବସିବା ପରେ କୁରାଢ଼ି ନେଇ କାଠ ହାଣିବାକୁ ଗଲା। କିନ୍ତୁ ଗୋଟିଏ

ଗଛରେ ଦୁଇ ଚୋଟ ପକାଇ ତୃତୀୟ ଚୋଟ ମାରୁ ମାରୁ କୁରାଢ଼ିଟା ଖସିଗଲା ଯେ, ଯାଇ ତା ଡାହାଣ ଗୋଡ଼ରେ ବସିଗଲା। ଖଣ୍ଡିଆ ଗୋଡ଼ରେ ସେ ଆଉ କି କାଠ କାଟିବ? କାନମୁଣ୍ଡା ଆଉଁସି ଘରକୁ ପଳାଇଆସିଲା। ବୁଢ଼ା ଅସନ୍ତୋଷରୁହିଁ ଏତକ ଘଟିଲା ଜାଣ।

ବଡ଼ଭାଇ ଘାଇଲା ହୋଇ ପଳାଇଆସିବା ଦେଖି ମଝିଆଁ ଭାଇ ମାଆକୁ କହିଲା, "ମାଆ ମ, ଭାଇ ଅପାରଗ ବୋଲି ଘାଇଲା ହୋଇ ଫେରିଲେ। ଦେ, ମୋ'ପାଇଁ ଖାଇବାକୁ ବାନ୍ଧିଦେ, ମୁଁ ଯାଇ କାଠ ହାଣି ଆଣିବି।"

ପୁଅ ଖାଇବ ବୋଲି ମାଆ ଗୋଟିଏ ପୁଟୁଳିରେ କିଛି ଖାଇବା ଜିନିଷ ବାନ୍ଧିଦେଲା। ପୁଅ ପୁଟୁଳିଟି ଧରି କାଠ ହାଣିବ ବୋଲି ବଣକୁ ଚାଲିଗଲା। ସେ ବି ବଣରେ ପହଞ୍ଚୁ ପହଞ୍ଚୁ ଭାବିଲା, ଆଗ ଖାଇପିଇ ତାଜା ହୋଇଗଲେ ପଛେ ଭଲକରି ଗଣ୍ଡିଏ କାଠ ହାଣିପକାଇବି। ଏପରି ଭାବି ମଝିଆଁ ଭାଇ ପୁଟୁଳି ଖୋଲୁଛି, ସେହି ବୁଢ଼ା ଆସି ପହଞ୍ଚିଗଲା। କହିଲା, "ବାପା, ଦି'ଦିନ ହେଲା କିଛି ଖାଇନି ଯେ, ଦେହଟା ଝାଇଁମାରିଯାଉଛି। ତୁ କଣ ଖାଉଛୁ, ମୋ ହାତକୁ ଗଣ୍ଡିଏ ଦିଅନ୍ତୁନି?"

ମଝିଆ ଭାଇ କହିଲା, "ତତେ ଆଉ ଜାଗା ମିଳିଲା ନାହିଁ ଯେ, ତୁ ଏ ବଣ ଭିତରେ ଆସି ମାଗୁଛୁ। ପଳା ଏଠୁ।"

ବୁଢ଼ା ନେହୁରା ହୋଇ କେତେ ମାଗିଲା; କିନ୍ତୁ ମଝିଆଁ ଭାଇ ତ ବଡ଼ଭାଇଠାରୁ ବଳି ଚୋଠା। ସେ କାହିଁକି କିଛି ଦିଅନ୍ତା? ବୁଢ଼ା ଆଗରେ ବସି ସେ ଯାହା ଆଣିଥିଲା, ସବୁ ଖାଇଦେଲା। ବୁଢ଼ା ହତାଶ ହୋଇ ଫେରିଗଲା। ଖାଇପିଇ ସାରି ମଝିଆଁ ଭାଇ କାଠ ହାଣିବ ବୋଲି ବାହାରିପଡ଼ିଲା। କିନ୍ତୁ ଗଛରେ ଗୋଟିଏ ଚୋଟ ମାରି ଦ୍ୱିତୀୟ ଚୋଟ ପକାଇବାବେଳକୁ କୁରାଢ଼ି ଯାଇ ଗଛରେ କ'ଣ ବାଜିବ, ବସିଗଲା ତାର ଡାହାଣ ଗୋଡ଼ରେ। 'ମରିଗଲି, ମରିଗଲି' ହୋଇ ଗୁଡ଼ାଏ ରଡ଼ି-ବୋବାଳି କଲା। ଶେଷକୁ ଛୋଟେଇ ଛୋଟେଇ ଖାଲି ହାତରେ ଘରକୁ ପଳାଇଆସିଲା।

ବୁଢ଼ାକୁ ଦି'ଟା ଖାଇବାକୁ ଦେଇଥିଲେ ତାର ଏ ଦଶା ହୋଇ ନଥାନ୍ତା।

ମଝିଆଁ ଭାଇ ବି ଖାଲିହାତରେ ଫେରିଆସିଲା ଦେଖି ସାନଭାଇ ବୋକା ମାଧିଆ ମାଆକୁ କହିଲା, "ମାଆ ମ, ବାପା ତ ଦେହ-ଦୁଃଖରେ ପଡ଼ିଲେ; ଭାଇମାନେ ତ ଗୋଡ଼ ହାଣି ଘରେ ବସିଲେ। ତୁ ଯଦି କହନ୍ତୁ, ମୁଁ ଯାଇ ବଣରୁ କାଠ ହାଣିଆଣନ୍ତି।"

ମାଆ କହିଲା, "ତୁ ଗୋଟେ ପୁଅରେ ଗଣା ଯେ, ତତେ ପଠେଇବି?" ତୁ ବୋକା ମାଧିଆଟାଏ। ବଣକୁ ଯିବୁ ଯେ କୁରାଢ଼ିଖଣ୍ଡିକ କାହାକୁ ଦେଇ

ଆସିବୁ। ତତେ ପଠେଇ ଲାଭ ନାହିଁ।''

ତଥାପି ପୁଅ ଧରିବସିଲା ଯେ କାଠ ହାଣିବାକୁ ଯିବ। ମାଆ ଶେଷକୁ ତା କାନିରେ ଖଣ୍ଡିଏ ପୋଡ଼ପିଠା ବାନ୍ଧିଦେଇ କହିଲା, ''ଯା, ଭୋକ ହେଲେ ପୋଡ଼ପିଠାଖଣ୍ଡିକ ଖାଇବୁ। ଆଉ ହେଇଟି, କୁରାଢ଼ି ହଜାଇବୁ ନାହିଁଟି।''

ସାନଭାଇ ପୋଡ଼ପିଠାଟି ଧରି ବଣକୁ ଚାଲିଗଲା। କାଠ କାଟିବା ଆଗରୁ ପିଠାଖଣ୍ଡିକ ଖାଇବ ବୋଲି ବସିଛି, ପୁଣି ସେହି ବୁଢ଼ା ଆସି ପହଞ୍ଚିଗଲା। କହିଲା, ''ବାପା, ଭୋକରେ ମୋ ପେଟ ଜଳୁଛି। କ'ଣ ଖାଇବାକୁ ଆଣିଛୁ, ମତେ ଟିକିଏ ଦେବୁ କି ?''

ସାନଭାଇ କହିଲା, ''ମଉସା, ମୋ ପାଖରେ ଖଣ୍ଡିଏ ପୋଡ଼ପିଠା ମାତ୍ର ଅଛି। ତୁମ ବୁଢ଼ା ପାଟିକୁ ଯଦି ସୁଆଦ ଲାଗିବ ତେବେ ବସ, ଖାଇବା।''

ବୁଢ଼ା ଆଗ୍ରହରେ ଲାଜ ଗଡ଼େଇ ପିଠା ଖାଇବାକୁ ବସିପଡ଼ିଲା। ସାନଭାଇ ଲୁଗାକାନିରୁ ଗଣ୍ଠି ଫିଟାଇ ପିଠା କାଢ଼େ ତ, ସେ ପିଠା ଆଉ ସାଧାରଣ ପୋଡ଼ପିଠା ହୋଇ ରହିନି; ସେ ଅସଲି ଛେନା ପୋଡ଼ପିଠା ହୋଇଯାଇଛି! ତା ଭିତରେ ବାଦାମ, କିସମିସ, ଗୁଜୁରାତି, ଲବଙ୍ଗ ପଡ଼ି ବାସନା ଉଠୁଛି ଯେ ଖଣ୍ଡମଣ୍ଡଳ ଚହଟିଯାଉଛି! ସେ ବୁଢ଼ାକୁ ବଡ଼ ଖଣ୍ଡିଏ ପିଠା ଦେଇ ନିଜେ ଛୋଟ ଖଣ୍ଡିଏ ଖାଇଲା। ବୁଢ଼ା ପିଠା ଖାଇସାରି ଭାରି ସନ୍ତୋଷରେ କହିଲା, ''ତୁ ବଡ଼ ଦି'ଭାଇଙ୍କଠାରୁ ପୂରା ଅଲଗା, ନୁହଁ ରେ ? —ଭଲ, ଭଲ; ଗରିବଗୁରୁବାଙ୍କୁ ଏପରି ଦୟା କର ବାପ! ଦିଅଁ ତୋର ମଙ୍ଗଳ କରିବେ। ତୁ କାଠ ହାଣିବାକୁ ଆସିଛୁଟି ?''

ସାନଭାଇ କହିଲା, ''ହଁ!'' ବୁଢ଼ା କହିଲା, ''ତା'ହେଲେ ଆସ, ମୁଁ ତତେ ଗୋଟିଏ ଗଛ ଦେଖାଇଦେବି ଯେ ସେ ଗଛଟି ହାଣିଲେ, ତୁ ଗୋଟିଏ ଅପୂର୍ବ ଜିନିଷ ପାଇଯିବୁ। କିନ୍ତୁ ସାବଧାନ, ସେ ଜିନିଷଟି ନେଇ ତୁ ଆଉ ଘରକୁ ଫେରିବୁନାହିଁ; ଏକମୁହାଁ ହୋଇ ସହରକୁ ଚାଲିଯିବୁ। ଘରକୁ ଗଲେ ତୋ ଲୋଭୀ ଭାଇମାନେ ତତେ ହଇରାଣ କରିଦେବେ।'' ଏହା କହି ବୁଢ଼ା ସେ ସାନଭାଇକୁ ନେଇ ଗୋଟିଏ ବଡ଼ ଗଛ ଦେଖାଇଦେଲା। କହିଲା, ''ଏହି ଗଛଟି ହାଣ।''

ସାନଭାଇ କାଠ ହାଣୁ ହାଣୁ ବୁଢ଼ା ଯେ କେଉଁଆଡ଼େ ଉଭେଇଗଲା, ତାହା ଜାଣିହେଲା ନାହିଁ। କିଛି ସମୟ ପରେ ସାନଭାଇ ଯେତେବେଳେ ଗଛଟି ହାଣି ତଳେ ପକାଇଦିଏ, ଦେଖିଲା ତା ଭିତରୁ ଗୋଟିଏ ସୁନାହଂସ ବାହାରିପଡ଼ିଲା। ହଂସ ଦେହରେ ସୁନାର ପରଗୁଡ଼ାକ ଚିକ୍‌ଚିକ୍ କରୁଥାଏ। ସାନଭାଇ କାଠହଣା ଛାଡ଼ି ସେ ହଂସଟି ଧରିପକାଇଲା। ହଂସଟି ତାର ପୋଷା ହଂସପରି ତା କୋଳରେ ଲାଖିରହିଲା। ବୁଢ଼ା ଏହି ଅପୂର୍ବ ଜିନିଷ କଥା କହୁଥିଲା ଜାଣି ସାନଭାଇ ହଂସଟି

ଧରି ସିଧା ସହରଆଡ଼େ ଚାଲିଲା।

ସୁନାହଂସ ଧରି ସେ ସହରଆଡ଼େ ଚାଲିଛି, ଗୋଟିଏ ଗାଆଁମୁଣ୍ଡରେ ରାତି ହୋଇଗଲା। ସେ ଗାଆଁରେ ଗୋଟିଏ ଘରୁଆ ହୋଟେଲ ଥାଏ; ଗଲା-ଅଇଲା ବାଟୋଇମାନେ ସେଠାରେ ଖାଇପିଇ ରାତି କଟାନ୍ତି। ଏ ପୁଅ ଯାଇ ସେହି ହୋଟେଲରେ ରହିଗଲା। ସେ ହୋଟେଲବାଲାର ତିନି ଝିଅ। ଏ ସୁନାହଂସଟି ଦେଖି ସେମାନଙ୍କ ଆଖି ଝଲସିଗଲା। କାଠୁରିଆପୁଅ ହଂସଟି କାଛ ଠଣାରେ ବସାଇଦେଇ ଶୋଇପଡ଼ିଲା। ଏ ଭିତରେ ହୋଟେଲବାଲାର ବଡ଼ଝିଅ ଭାବିଲା– ଏତିକିବେଳେ ସୁନାହଂସର ପରଟିଏ ଉପୁଡ଼ାଇ ଆଣିବି ଯେ କାଳ-କାଳକୁ ପାଖରେ ରଖିବି। ଏପରି ଭାବି ସେ ଯାଇ ହଂସକୁ ଧରି ତା ଦେହରୁ ପର ଉପାଡ଼ିବାକୁ ବସିଲା। କିନ୍ତୁ ସେ ହଂସଟିକୁ ଛୁଇଁଦେବାମାତ୍ରେ ତାର ଦୁଇହାତ ହଂସ ଦେହରେ ଏପରି ଲାଗିରହିଲା ଯେ, ଆଉ ଛାଡ଼ିଲା ନାହିଁ। ସେ ଆଉ ଯାଏ କୁଆଡ଼େ– ସେଇଠି ବାନ୍ଧିହୋଇ ରହିଲା। ସେ ସେପରି ଠିଆହୋଇଛି– ଏ ଭିତରେ ହୋଟେଲବାଲାର ମଝିଆଁ ଝିଅ ହଂସ ଦେହରୁ ପରଟିଏ ଟାଣିନେବ ବୋଲି ଆସି ସେଠାରେ ପହଞ୍ଚିଗଲା। ଆସୁ ଆସୁ ବଡ଼ଭଉଣୀକୁ ସେଠାରେ ଦେଖି "କିଲୋ, ନାନୀ! ଏଠି କ'ଣ ଠିଆହୋଇଛୁ" –କହି ତାକୁ ଧରିପକାଇଲା। ସେ ଆଉ ଯାଏ କୁଆଡ଼େ? ଭଉଣୀ ହାତ ଧରୁ ଧରୁ ସେ ବି ସେଠାରେ ଲାଖିରହିଲା; ସେ ଆଉ ଖସି ଯାଇପାରିଲାନାହିଁ। କିଛି ସମୟପରେ ସାନଭଉଣୀ ଆସି ସେଠାରେ ପହଞ୍ଚିଗଲା। ବଡ଼ ଦି'ଭଉଣୀଙ୍କୁ ଦେଖି କଥା କ'ଣ ବୋଲି ସେ ସେପାଖକୁ ଚାଲିଗଲା। ବଡ଼ ଭଉଣୀମାନେ କହିଲେ, "ଆଲୋ, ତୁ ଏପାଖକୁ ଆସନା, ଆସନା– ଏଠୁ ପଳାଇଯା।" କିନ୍ତୁ ସାନଭଉଣୀ ଭାବିଲା, ବଡ଼ ଦି' ଭଉଣୀ କିଛି ଲୁଚାଇ ନେଇଯାଉଛନ୍ତି ଯେ, ସେ ଦେଖିଦେବ ଭାବି ତାକୁ ସେଠାରୁ ତଡୁଛନ୍ତି। ତେଣୁ ସେ ଦୂରକୁ ପଳାଇବ କ'ଣ, ପାଖକୁ ଲାଗିଆସି ମଝିଆ ଭଉଣୀର ହାତ ଧରିପକାଇଲା। ସଙ୍ଗେ ସଙ୍ଗେ ତାକୁ ବି ସୁନାହଂସର କିମିଆ ଲାଗିଗଲା। ସେ ଯେତେ ଟାଣି-ଓଟାରି ହେଲା, ମଝିଆଁ ଭଉଣୀ ହାତରୁ ଜମା ଖସିଯାଇପାରିଲାନାହିଁ; ଫଳରେ ବଡ଼ ପଛକୁ ମଝିଆଁ ଓ ମଝିଆଁ ପଛକୁ ସାନ ଭଉଣୀ ସେଠାରେ ଲାଗିରହିଲେ।

ଏ ଭିତରେ ରାତି ପାହି ସକାଳ ହେବାକୁ ବସିଲା। ତିନି ଭଉଣୀ ତିନି ଚୋରଙ୍କ ପରି ଚୁପଚାପ୍ ଠିଆହୋଇଥାନ୍ତି। କାଠୁରିଆ ସାନପୁଅ ରାତି ପାହାନ୍ତିଆରୁ ଉଠି ହଂସଟିକୁ ଧରି ହୋଟେଲରୁ ବାହାରିପଡ଼ିଲା। ଏ ତିନି ଭଉଣୀ ଯେତେ ଟାଣିଓଟାରି ହେଲେ ବି ହଂସ ଦେହରୁ ଜମା ଖସିପାରିଲେ ନାହିଁ। ଆଗରେ କାଠୁରିଆ ପୁଅ ଚାଲିଥାଏ– ଏ ତିନି ଭଉଣୀ ତା ପଛରେ ଧାଡ଼ିବାନ୍ଧି ଚାଲିଥାନ୍ତି।

କାଠୁରିଆ ପୁଅ ଶୀଘ୍ର ସହରରେ ପହଞ୍ଚିବ ବୋଲି ନାକସିଧା ଚାଲିଥାଏ। ଯେ ଯାଇ ଗାଆଁମୁଣ୍ଡରେ ପହଞ୍ଚିବା ବେଳକୁ ସେ ଗାଆଁ ପୁରୋହିତ ଗିର୍ଜା ଫାଟକ ପାଖରେ ଠିଆହୋଇ ଦେଖନ୍ତି ତ ଜଣେ ଟୋକା ପଛରେ ତିନିଟି ଝିଅ ଟାଣିଓଟାଗିହୋଇ ଚାଲିଛନ୍ତି। "ଆଲୋ ଝିଅ, ଇଏ କି କଥା ? ଇଏ କି କଥା ? କାହିଁକି ଏପରି ତା'ପଛରେ ଲାଗିଛ ?" ବୋଲି ଗଡ଼ି ଛାଡ଼ି ପୁରୋହିତ ତାଙ୍କ ପାଖକୁ ଦୌଡ଼ିଆସିଲେ। "କଥା କ'ଣ ?" ବୋଲି ପଚାରିବା ଲାଗି ସେ ସମସ୍ତଙ୍କ ପଛରେ ଥିବା ସାନଭଉଣୀର ହାତ ଧରି ଟାଣିଦିଅନ୍ତି ତ, ଆଉ ଯାଆନ୍ତି କୁଆଡ଼େ ? ତାଙ୍କ ହାତ ଆଉ ସେ ଝିଅ ହାତରୁ ନଛାଡ଼େ। ସେ ବି ସେମାନଙ୍କ ପଛରେ ଟାଣିହୋଇ ଚାଲିଲେ।

ଏ ଭିତରେ କଥା କ'ଣ ହୋଇଥାଏ ନା, ସେ ଗାଆଁ ସରପଞ୍ଚଙ୍କର ଗୋଟିଏ ପୁଅ ହୋଇଥାଏ ଯେ, ସେହି ଦିନ କରି ତାର ନାଆଁଦିଆ ଉତ୍ସବ ପଡ଼ିଥାଏ। ଉତ୍ସବ ବିଷୟରେ ପୁରୋହିତଙ୍କ ସହିତ କଥାଭାଷା କରିବା ଲାଗି ସରପଞ୍ଚେ ଆସିଲେ – ସେତିକିବେଳକୁ ଗିର୍ଜା ପାଖରେ ପହଞ୍ଚିଗଲେ। କିନ୍ତୁ ପୁରୋହିତେ ଗିର୍ଜା ଛାଡ଼ି ଝିଅଙ୍କ ପଛରେ ଦୌଡ଼ିଛନ୍ତି ଦେଖି ସେ ପାଟିକରି ଉଠିଲେ, "ଆହେ ପୁରୋହିତେ, ହେ ପୁରୋହିତେ ! ଆଖି କେବେ ନ ଦେଖିବା କଥା, ଇଏ କ'ଣ ଦେଖିଲି ହେ ! ଆପଣ ବୟସର ଲୋକ ଜଣେ। ସେ ଝିଅଙ୍କ ପଛରେ କ'ଣ ଦୌଡୁଛନ୍ତି ? ଆଜି ପରା ମୋ ପୁଅର ନାଆଁଦିଆ; ଏଣେ ମୋ କଥା ଟିକିଏ ଶୁଣିଯାଆନ୍ତୁ।"

କିନ୍ତୁ ପୁରୋହିତଙ୍କର କ'ଣ ଫେରିବାକୁ ଚାରା ଅଛି ଯେ, ସେ ଫେରିବେ ? ତାଙ୍କୁ ତ ସୁନାହଂସର କିମିଆ ଟାଣିନେଉଛି ଯେ, ସେ ବୁଦ୍ଧିବଣା ହୋଇ ସେ ଝିଅଙ୍କ ପଛରେ ଚାଲିଛନ୍ତି। ପୁରୋହିତେ କାହିଁକି ଶୁଣୁନାହାନ୍ତି, ତାହା ବୁଝିବାଲାଗି ସରପଞ୍ଚେ ଲୁଗାପଟା ଟେକି ତାଙ୍କ ପଛରେ ଧାଇଁଲେ। ଧାଇଁ ଧାଇଁ ଯାଇ ପୁରୋହିତଙ୍କୁ ଧରି "କଥା କ'ଣ ?" ବୋଲି ପଚାରିଦେବା ବେଳକୁ ତାଙ୍କ ଦଫା ବି ଶେଷହୋଇଗଲା। ତାଙ୍କ ହାତ ପୁରୋହିତଙ୍କ ହାତରେ ଏପରି ଲାଗିଗଲା ଯେ, ଆଉ ନଛାଡ଼େ। ଫଳରେ ଜଣକ ପଛରେ ଜଣେ ହୋଇ ପାଞ୍ଚଜଣଯାକ ଗୋଟିଏ ଧାଡ଼ିରେ କାଠୁରିଆ ପୁଅ ପଛରେ ଚାଲିଲେ। ବାଟରେ ଚିହ୍ନା-ଅଚିହ୍ନା ଅନେକ ଲୋକ ଏ ଦୃଶ୍ୟ ଦେଖି "କଥା କ'ଣ ?" ବୋଲି ବୁଝିବା ଲାଗି ସେମାନଙ୍କ ପଛରେ ଦୌଡ଼ିଲେ। ଦୈବକୁ ସେମାନଙ୍କ ଭିତରୁ ଆଗରେ ଥିବା ଲୋକ ଜଣକ ସରପଞ୍ଚଙ୍କୁ ଛୁଇଁଦେଲା। ସଙ୍ଗେ ସଙ୍ଗେ ତା' ହାତ ଯାଇ ସରପଞ୍ଚଙ୍କ ହାତରେ ଅଠାପରି ଲାଗିଗଲା। ତାକୁ ଧରି ତା'ପଛ, ତା' ପଛ, ତା'ପଛରେ ଥିବା ଲୋକମାନେ ସେ କିମିଆ ବଳରେ ଜଣକ ଦେହରେ ଜଣେ ବାନ୍ଧିହୋଇ ଏକ ଲମ୍ବା ଧାଡ଼ିକରି ଚାଲିଲେ। ଇଏ ତାକୁ, ସେ ଆକୁ ଟାଣୁଥାଏ; କିନ୍ତୁ

କେହି ସେ ବନ୍ଧନରୁ ଖସିପାରୁନଥାନ୍ତି। ପଛରେ ଏପରି ଏକ ଲମ୍ୱା ଧାଡ଼ିରେ ଧାଡ଼ିଏ ଲୋକ ଧରି କାଠୁରିଆ ପୁଅ ଯାଇ ସହରଭିତରେ ପଶିଗଲା। ସେ ଦୃଶ୍ୟ ଦେଖି ସହରିଆ ଛତରାମାନେ ମାତିଉଠିଲେ। ଥଟ୍ଟା-ତମାସା କରି ସେମାନେ ଆସି ସବା ପଛରେ ଥିବା ଲୋକଙ୍କୁ ଧରି ପଛରୁ ଟାଣିଦିଅନ୍ତି ତ, ଆଉ ଯାଆନ୍ତି କୁଆଡ଼େ! ସେମାନେ ବି ଆହୁରି ଏକ ଧାଡ଼ିକରି ପୁରୁଣା ଧାଡ଼ି ପଛରେ ଲାଗିଗଲେ। ଏମାନେ ଚାଲିଥାନ୍ତି– ସାହି ବଜାରର ଦେଖଣାହାରିଏ ରାସ୍ତାକଡ଼ରେ ଠିଆହୋଇ ହସୁଥାନ୍ତି। କାଠୁରିଆ ପୁଅ ଏପରି ଯାଇ ଯାଇ ରାଜାଙ୍କ ନଅର ପାଖରେ ପହଞ୍ଚିଗଲା।

ସେ ରାଜ୍ୟ ରାଜାଙ୍କର ପୁଣି କିଛି ପୁଅ ନଥାନ୍ତି– ଗୋଟିଏ ବୋଲି ଝିଅ। ଭାରି ସୁନ୍ଦରୀ; ଗୋଟିଏ ଚାଉଳରେ ଗଢ଼ା। ବୁଦ୍ଧି ଯିମିତି, ସ୍ୱାସ୍ଥ୍ୟ ସେମିତି। କିନ୍ତୁ କେତେ ହେଲେ କ'ଣ ହେବ, ତାକୁ କି ରୋଗ ଧରିଥାଏ କେଜାଣି, ସେ ଦିନରାତି ମନ ମାରି ଝରକା ପାଖରେ ବସିଥାଏ; କଥାଭାଷା କିଛି କହେନି। ଝିଅ ପାଟିରୁ କଥା ପଦଟିଏ ଶୁଣିବାଲାଗି ରାଜା କେତେ ଔଷଧ ମହୌଷଧ, କେତେ ବଇଦ କବିରାଜ, କେତେ ଗୁଣି-ଗାରୁଡ଼ି କଲେ– କୌଣସିଥିରେ କିଛି ଫଳ ଫଳିଲାନାହିଁ। ଶେଷକୁ ଦିନେ ଜଣେ ବାମନ ବୁଢ଼ା ଆସିଥିଲା ଯେ, ସେ କହିଥିଲା, ଯଦି ରଜାଝିଅ ଥରଟିଏ ମନଖୋଲି ହସିଦବ, ତେବେ ତା ପାଟି ଖୋଲିଯିବ; ସେ ଭଲମଣିଷଙ୍କ ପରି କଥାଭାଷା କରିବ। ଫଳରେ ଝିଅକୁ ହସାଇବାଲାଗି ରାଜା ନାନା ହାସ୍ୟକାର ଅଣାଇ ଚେଷ୍ଟାକଲେ, ନାନା ଖେଳ କୌତୁକ ଦେଖାଇଲେ; କିନ୍ତୁ ସେ ମୌନମୁହାଁ ଝିଅ କେଉଁଥିରେ ହସିଲାନାହିଁ। ଶେଷକୁ ନିରାଶ ହୋଇ ରାଜା ଘୋଷଣା କରିଥାନ୍ତି ଯେ ଯେଉଁ ଲୋକ ତାଙ୍କ ଝିଅକୁ ହସାଇଦବ, ସେ ତାକୁ ବାହାହେବ ଓ ତାଙ୍କ ଅନ୍ତେ ରାଜ୍ୟର ରାଜା ହେବ।

ରଜାଝିଅ ସେଦିନ ବି ସବୁଦିନ ପରି ଝରକା ପାଖରେ ବସି ବାହାରକୁ ଚାହିଁଥାଏ। କାଠୁରିଆ ପୁଅ ପଛରେ ଏପରି ଲୋକ ଧରି ଯେତେବେଳେ ଯାଇ ନଅର ପାଖରେ ପହଞ୍ଚିଯାଏ, ସେତେବେଳେ ସେ ଦୃଶ୍ୟ ଦେଖି ପୋଇଲୀ ପରିବାରୀଙ୍କ ସହିତ ରଜାଝିଅ ବି ଠୋ-ଠୋ ହୋଇ ହସିଉଠିଲା। ହସୁ ହସୁ ଏତେ ହସିଲା ଯେ, ତା ପାଟି ଫିଟିଗଲା। ଝରକା ପାଖରେ ଠିଆହୋଇ ସେ ପଚାରିଲା, ''ଆହେ, କଥା କ'ଣ ? ଏତେ ଲୋକ କାହିଁକି ତା'ପଛକୁ ତା'ପଛ ହୋଇ ଇମିତି ଚାଲିଛନ୍ତି ?''

ଏ ପ୍ରଶ୍ନ ଶୁଣି ହୋଟେଲବାଲା ବଡ଼ଝିଅ ଲାଜ-ଅପମାନରେ ମୁଣ୍ଡପୋତି କହିଲା, ''ମଣିମା, ଇଏ ଚୋରି କରିବାର ଫଳ। ମୁଁ ଏ ଲୋକର ସୁନାହଂସ

ଦେହରୁ ସୁନାପରଟିଏ ଚୋରାଇ ନେବାକୁ ବସିଥିଲି। କିନ୍ତୁ ଏ ହଂସ ଦେହରେ କି କୁହୁକ ଅଛି କେଜାଣି, ମୁଁ ତା ଦେହରେ ଲାଗିଯାଇଛି ଯେ, ଜମା ଖସିପାରୁନାହିଁ। ମତେ ମୋ ଭଉଣୀ ଛୁଇଁଦେବାରୁ ସେ ମୋ ଦେହରେ ଲାଗିଗଲା। ଇମିତି ଜଣକ ପଛରେ ଜଣେ ଲାଗିଛୁ। ଆମକୁ ଏଥିରୁ ମୁକୁଳାଇ ଦିଅ, ମଣିମା !''

ଏମାନେ ଏପଟେ କଥାଭାଷା ହେଉଛନ୍ତି; ଝିଅର ପାଟି ଫିଟିବା ଖବର ଯାଇ ରାଜାଙ୍କ ପାଖରେ ପହଞ୍ଚିଗଲା। ରାଜା ଖୁସିରେ ସେଠାକୁ ଦୌଡ଼ିଆସିଲେ ଏବଂ ସବୁକଥା ଶୁଣି କାଠୁରିଆ ପୁଅକୁ ନଅରକୁ ପାଛୋଟିନେଲେ। କାଠୁରିଆ ପୁଅ ହୋଟେଲବାଲା ବଡ଼ଝିଅକୁ କହିଲା, ''ଆଉ ଦିନେ ଏପରି ପର ଜିନିଷ ଚୋରାଇବୁ ନାହିଁ। ସାବଧାନ; ଯା, ଏଥର ଘରକୁ ପଳାଇଯା।'' ଚାହୁଁ ଚାହୁଁ ସୁନାହଂସର କୁହୁକ ଶକ୍ତି ସେ ଧାଡ଼ିକଯାକ ଲୋକଙ୍କଠାରୁ ଛାଡ଼ିଗଲା। ଯେ ଯାହା ବାଟରେ ଚାଲିଯାଉଥିଲେ; ଏତିକିବେଳେ ରାଜା ସେ ସମସ୍ତଙ୍କୁ ଡାକି କହିଲେ, ''ହେଇଟି, ଶୁଣିଯାଅ; ଆଜି ମୋ ଝିଅର ବାହାଘର ହେବ। ତେଣୁ ସମସ୍ତଙ୍କୁ ନିମନ୍ତ୍ରଣ ରହିଲା; ସମସ୍ତେ ଆସି ମୋ ଘରେ କୁଣିଆ ହେବ।''

ଲୋକଙ୍କ ଖୁସି ଦେଖେ କିଏ ! କାଠୁରିଆର ସାନପୁଅ ସହିତ ରଜାଝିଅର ବାହାଘର ବଡ଼ ଧୁମ୍‌ଧାମରେ ହେଲା। ବହୁଲୋକ ଖାଇଲେ ପିଇଲେ– ମୁଁ ଗଲାବେଳକୁ ମୋ ପାଇଁ କିଛି ବଳିନଥିଲା।''

# ମୂଳା

ଗୋଟାଏ ଖଣ୍ଡାୟତଘର ଦୁଇ ଭାଇ ଥାଆନ୍ତି ଯେ, ଦୁଇ ଜଣଯାକ ରାଜାଙ୍କ ସୈନ୍ୟ। ରାଜା ଜମିବାଡ଼ି ଖଞ୍ଜିଦେଇଥାନ୍ତି। ସେଥିରୁ ଯାହା ଆୟ ହୁଏ ଖାଇପିଇ ବଞ୍ଚନ୍ତି; କର ଦେବାକୁ ପଡ଼େନି। କିନ୍ତୁ ସାନଭାଇଟିର ଭାଗ୍ୟ ମନ୍ଦ। ତା ଜମି ଖାଲି ପଥୁରିଆ। ଯେତେ କଲେ ବି ଭଲ ଫସଲ ହୁଏନି। ତେଣୁ ବଡ଼ଭାଇ ଦିନକୁଦିନ ଧନୀ ହୋଇଚାଲିଲା; ସାନଭାଇର ପିଲେ ଖାଇବାମୁଠାକ ବି ଭଲରେ ପାଇଲେ ନାହିଁ। ବିଚରା ସେନାପତିଙ୍କୁ କେତେ ଜଣାକଲେ, ରାଜାଙ୍କୁ କେତେ ଅର୍ଜି ଲେଖିଲା; କେହି ତା କଥା ଶୁଣିଲେ ନାହିଁ। ଏପରି ହେଉ ହେଉ ବୟସ ଗଡ଼ିଗଲା। ଦି'ଭାଇ ସୈନ୍ୟ ବିଭାଗରୁ ଅବସର ନେଇ ପୂରା ଚାଷକାମରେ ଲାଗିଥିଲେ। ବଡ଼ଭାଇ ତ ଧନୀ ଲୋକ– ତା ପୁଅମାନେ ବଡ଼ ସହରରେ ରହି ପାଠ ପଢ଼ନ୍ତି। ଚାକରବାକର ବିଲକାମ କରନ୍ତି। ସେ ନିଜେ ମହାଜନି କରେ। ସେ ବଡ଼ଲୋକ ବୋଲି ଗାଆଁ କଥା ପଡ଼ିଲେ ରାଜାଙ୍କ ଦରବାରରୁ

ତା ପାଖକୁ ଖବର ଆସେ। ସାନଭାଇ ବିଚରାକୁ କେହି ଚିହ୍ନନ୍ତି ନାହିଁ। ତା' ପିଲେ ବାପା ସଙ୍ଗେ ମିଶି ବିଲକାମ କରନ୍ତି।

ସେ ବର୍ଷ ସାନଭାଇ ଖଣ୍ଡିଏ ଭଲ କିଆରି ଦେଖି ସେଥିରେ ମୂଳା ଚାଷ କଲା। କଥାରେ ଅଛି, ଅଭାଗା ଯୁଆଡ଼େ ଯାଏ, ପାଣି ଶୁଖିଯାଏ। ସାନଭାଇର ମୂଳା ଚାଷ ବି ଭଲ ହେଲା ନାହିଁ। କିନ୍ତୁ ଆଶ୍ଚର୍ଯ୍ୟ କଥା, ସେ ଭିତରୁ ଗୋଟିଏ ମୂଳା ଏପରି ବଢ଼ିଲା ଯେ କେହି କେବେ ଏପରି ମୂଳା ଦେଖିନଥିବ! ମୂଳାଟି ଏପରି ବଢୁଛି ଦେଖି ସାନଭାଇର ପିଲାମାନେ ଖୋସା କୋଡ଼ା କରି ତା ମୂଳରେ ଭଲ କରି ଦି'ମୁଠା ସାର ବି ଦେଇଦେଲେ। ମୂଳା ବଢ଼ିଚାଲିଲା। ବଢ଼ି ବଢ଼ି ଯେତେବେଳେ ସେଇଟି ମସ୍ତବଡ଼ ହୋଇଗଲା, ସେତେବେଳେ ଖୋଳିବାରୁ ଦେଖାଗଲା ଯେ, ପ୍ରାୟ ମଣିଷେ ଉଚ୍ଚ ମୂଳା ହୋଇଛି। ପୁଣି ଏତେ ମୋଟା ଯେ, ଦୁଇ ଜଣ ଲୋକ ହେଲେ ବି ତାକୁ ସହଜରେ ଟେକିପାରିବେନାହିଁ। ମୂଳା ଦେଖି ସାନଭାଇ ମନ ଖୁସି ହୋଇଗଲା। ପାଖଆଖ ଲୋକେ ବି ମୂଳା ଦେଖିବାକୁ ଆସିଲେ। ମୂଳାର ଆକାର ପ୍ରକାର ଦେଖି ସମସ୍ତେ ସନ୍ତୁଷ୍ଟ ହୋଇଗଲେ ସତ; କିନ୍ତୁ ଏପରି ମୂଳାକୁ କିଏ କିଣିବ, ତାହା କେହି କହିଲେ ନାହିଁ।

ଗାଆଁ ଲୋକେ କିଣିବା କଥା କହୁନାହାନ୍ତି ଦେଖି ସାନଭାଇ ଭାବିଲା– ହାଟକୁ ନେଇଯିବି ଯେ ବିକିଦେବି। କିନ୍ତୁ ପରେ ଭାବିଲା, ଯେତେ ବଡ଼ ହେଲେ ବି ସାମାନ୍ୟ ମୂଳାଟାଏ। ବିକିଲେ କେତେ ବା ପଇସା ମିଳିବ। ଆଖିଦୃଷ୍ଟିଆ ଚିଜଟିଏ ହୋଇଛି; ଯାଉଛି ରାଜାଙ୍କ ଦରବାରକୁ ନେଇଯିବି ଯେ, ରାଜା ଦେଖିଲେ ଖୁସି ହୋଇଯିବେ, କିଛି ପୁରସ୍କାର ବି ପାଇଯିବି। ଏପରି ଭାବି ସେ ମୂଳାଟିକୁ ଶଗଡ଼ରେ ଲଦି ରାଜାଙ୍କ ନଅରକୁ ନେଇଗଲା। ରାଜା ସେତେବେଳକୁ ଦରବାରରେ ବସିଥାନ୍ତି। ଏ ଚାଷୀ ଲୋକ ଲଗାଇ ମୂଳାଟି ନେଇ ମଣିମାଙ୍କ ଛାମୁରେ ଥୋଇଦେଲା। ସେ ମୂଳାର ଆକାର ଦେଖି ରାଜା, ରାଣୀ, ମନ୍ତ୍ରୀ, ସେନାପତି, ଭଲଲୋକ, ପାଖଲୋକ ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ। ଆଉ କି ଦରବାର କରିବେ? ରାଜା ସେ ମୂଳାକୁ ପ୍ରଶଂସା କରୁ କରୁ ଚାଷୀକୁ କହିଲେ, ''ବୁଝିଲୁ ରେ, ତତେ ପ୍ରଶଂସା କରିବାକୁ ମୁଁ ଭାଷା ପାଉନାହିଁ। ସତରେ ମୋ ରାଜ୍ୟରେ ଯଦି ସମସ୍ତେ ତୋ ଭଳି ଚାଷୀ ହୋଇଯାନ୍ତେ, ତେବେ ଦେଶ ଖାଲି ଘିଅ-ମହୁରେ ଭାସନ୍ତା। ଆଚ୍ଛା! ସତରେ ତୁ ଚମତ୍କାର ମୂଳା ଫସଲ ଉତାରିଛୁ। ତୋ ନାଆଁ, ଗାଆଁ ପରିଚୟ ଦେଇ ତୋ ମୂଳା ଚାଷ କଥା ଆମ ଦରବାର ଲୋକଙ୍କୁ ଟିକିଏ ଶୁଣା।''

ସାନଭାଇ ହାତ ଯୋଡ଼ି କହିଲା, ''ମଣିମା, ମୁଁ ଛାମୁଙ୍କର ଜଣେ ସାଧାରଣ ସୈନ୍ୟ ଥିଲି। ମୋ ବଡ଼ଭାଇ ବି ସୈନ୍ୟ ଥିଲେ। ସେ ଧନୀଲୋକ ବୋଲି ଛାମୁ ତାକୁ ଚିହ୍ନନ୍ତି। ମୋ ଭାଗରେ ପଥୁରିଆ ଜମିତକ ପଡ଼ିବାରୁ ମୁଁ ଛାମୁଙ୍କୁ

କେତେ ଜଣାକରିଛି; କିନ୍ତୁ ଫଳ ହେଲା ନାହିଁ। ଯାହାହେଉ ଏବେ ବୟସ ଗଡ଼ିଗଲାରୁ ଚାକିରିରୁ ବିଦାହୋଇ ଟିକିଏ ଚାଷରେ ଲାଗିଛି। ମୂଳା ଚାଷ କରିଥିଲି। ଏଇ ଗୋଟିକ ବଡ଼ ଅପୂର୍ବ ଆକାରର ହେବାରୁ ଛାମୁଙ୍କୁ ଭେଟି ଦେବି ବୋଲି ଆଣିଛି। ଏତେଦିନକେ ଛାମୁଙ୍କ ମୁହଁରୁ ପ୍ରଶଂସା ଶୁଣିଲି; ସେତିକି ମୋର ଲକ୍ଷେ–ନ ହେଲେ ଏ ଗରିବକୁ କିଏ ପଚାରୁଛି ମଣିମା !''

ଏ କଥା ଶୁଣି ରାଜା ତା ମନର କଥା ବୁଝିଗଲେ। କହିଲେ, ''ତୁ ଏଥର ଭଲରେ ଚଳିବୁ।'' ତା'ପରେ ସେ ଭଣ୍ଡାରଘରିଆକୁ ଡାକି ତାକୁ ବହୁ ଧନ-ରତ୍ନ ଦିଆଇଲେ। ଭଲ ଜମିବାଡ଼ି ବି ଖଞ୍ଜିଦେଲେ। ସେ ମହା ଆନନ୍ଦରେ ଘରକୁ ଫେରିଆସିଲା।

ବଡ଼ଭାଇ ଯେତେବେଳେ ଶୁଣିଲା ଯେ ତା ସାନଭାଇ ରାଜାଙ୍କୁ ସାମାନ୍ୟ ମୂଳାଟିଏ ଉପହାର ଦେଇ ଏତେ ଧନ-ସମ୍ପଦ ପାଇଗଲା, ସେତେବେଳେ ସେ ଈର୍ଷାରେ ଜଳିପୋଡ଼ିଗଲା। ଭାବିଲା, ରାଜାଙ୍କ ମନ ଏବେ ନିଶ୍ଚୟ ପ୍ରଫୁଲ୍ଲ ଅଛି; ନ ହେଲେ କି ମୂଳାଟାଏ ପାଇଁ ଏତେ ଧନରତ୍ନ ଜମିବାଡ଼ି ଦେଇଦିଅନ୍ତେ ! ମୂଳାପାଇଁ ଯଦି ଏତେ ପୁରସ୍କାର ଦେଲେ, ତେବେ ଭଲ ଜିନିଷ ପାଇଁ କେତେ ପୁରସ୍କାର ନ ଦେବେ !! ଏପରି ଭାବି ସେ କଣ କଲା ନା, କିଛି ଜମିବାଡ଼ି ବନ୍ଧାପକାଇ ଲକ୍ଷେ ହେବ ନଗଦ ଟଙ୍କା ସଂଗ୍ରହ କରିପକାଇଲା। ସେତକ ଟଙ୍କା ଧରି ସେ ସେହି ଦିନ ରାତାରାତି ପଡ଼ିଶା ରାଜ୍ୟକୁ ଚାଲିଗଲା। ସେଠା ରାଜାଙ୍କର ଅତି ସୁନ୍ଦର ହଳେ ଘୋଡ଼ା ଥାନ୍ତି। ଲକ୍ଷେ ଟଙ୍କା ଦେଇ ସେ ଘୋଡ଼ାହଳକ କିଣିଆଣିଲା। ତା ପରଦିନ ସକାଳୁ ସକାଳୁ ଘୋଡ଼ା ଦୁଇଟିକୁ ବେଶଭୂଷା କରାଇ, ରୁପାର ଜିନ୍ ଓ ସୁନାର ତୁଣ୍ଡି ଲଗାଇ ରାଜାଙ୍କୁ ଭେଟି ଦେବ ବୋଲି ନିଜ ଦେଶ ରାଜାଙ୍କ ନଅରକୁ ନେଇଗଲା। ସତରେ ଘୋଡ଼ା ଦୁଇଟି ବଡ଼ ଡଉଲଡାଉଲ ହୋଇଥାନ୍ତି।

ରାଜା ସେ ଘୋଡ଼ା ଦୁଇଟି ଦେଖି ଭାରି ସନ୍ତୁଷ୍ଟ ହୋଇଗଲେ। କହିଲେ, ''ସତରେ ଆମ ଶାଳରେ ଏଭଳି ସୁନ୍ଦର ଘୋଡ଼ା ନଥିଲେ। ତୁମେ ଏ ଯୋଡ଼ିକ ଆଣି ଆମ ନଅରର ଶୋଭା ବଢ଼ାଇଦେଲ। ଏ ତ ବହୁତ ଟଙ୍କା ହୋଇଥିବେ; କେଉଁଠୁ କିପରି ଆଣିଲ, କହିଲ ?''

ବଡ଼ଭାଇ କହିଲା, ''ମଣିମାଙ୍କ ଦୟାରୁ ମୋର କିଛି ଅଭାବ ନାହିଁ। ଦେଶ ବୁଲି ଯାଇଥିଲି। ଭଲ ଘୋଡ଼ା ହଳେ ଆଖିରେ ପଡ଼ିଗଲେ; ଛାମୁଙ୍କୁ ଉପହାର ଦେବି ବୋଲି ଆଣିଦେଲି।''

ଏପରି ସୁନ୍ଦର ଉପହାର ବଦଳରେ ଏଭଳି ଜଣେ ନାମଜାଦା ଧନୀ ଲୋକଙ୍କୁ କି ପୁରସ୍କାର ଦେବେ, ରାଜା କିଛି ବୁଝିପାରିଲେନାହିଁ। ସେ ମନ୍ତ୍ରୀମାନଙ୍କ ମତ

ଲୋଡ଼ିଲେ । ଅନେକ ଆଲୋପ-ଆଲୋଚନା ପରେ ମହାମନ୍ତ୍ରୀ କହିଲେ, "ମଣିମା ! ଏ ଭଳି ସୁନ୍ଦର ଉପହାର ଲାଗି କାଲି ସେ ଯେଉଁ ଅପୂର୍ବ ମୂଳାଟି ମଣିମା ରଖିଛନ୍ତି, ସେଇଟିହିଁ ଠିକ୍ ପୁରସ୍କାର । ଲୋକଟିକୁ ମୂଳାଟି ଦେଇଦିଅନ୍ତୁ । ତା ଆତ୍ମା ସନ୍ତୁଷ୍ଟ ହୋଇଯିବ । ଦିଲ୍‌ଖୁସିଆ ଲୋକଙ୍କୁ ଦିଲ୍‌ଖୁସିଆ ପୁରସ୍କାରହିଁ ଦେବା ଉଚିତ ।

ରାଜାଙ୍କ ମନକୁ ପ୍ରସ୍ତାବଟି ପାଇଲା । ମୂଳାଟି ଉପରେ ତାଙ୍କର ଲୋଭ ଥିଲେ ବି ସେ ଗୋଟିଏ ସଭା କରି ସେଥିରେ ଘୋଡ଼ା ଭେଟି ଆଣିଦେଇଥିବା ବଡ଼ଭାଇକୁ ବଡ଼ ଆଡ଼ମ୍ବରସହକାରେ ସେହି ମୂଳାଟି ପୁରସ୍କାର ଦେଇଦେଲେ । ଘୋଡ଼ାଙ୍କ ମୂଲ୍ୟକୁ ଚାହିଁ ରାଜାଙ୍କଠାରୁ ସେ ଯେଉଁ ବହୁମୂଲ୍ୟ ଉପହାର ପାଇବାର ଆଶା ରଖିଥିଲା, ତାର ସେ ଆଶା ଧୂଳିରେ ମିଶିଗଲା । ବିଚରା ମନ-ଦୁଃଖ ମନରେ ରଖି ମୂଳାଟି ନେଇ ଗାଆଁକୁ ଫେରିଆସିଲା । ସେତେବେଳକୁ ତା ସାନଭାଇ ଟଙ୍କା-ପଇସାରେ ଭାସୁଥାଏ । ସାନଭାଇର ଭୋଗ-ଭାଗ୍ୟ ଦେଖି ବଡ଼ଭାଇର ମନ ଆହୁରି ଈର୍ଷାରେ ଜଳିଉଠିଲା । ସେ ତାର ସବୁତକ ରାଗ ସାନଭାଇ ଉପରେ ଅଜାଡ଼ିଦେଲା । ଭାବିଲା, ତାକୁ କୌଣସି ପ୍ରକାରେ ମରାଇଦେଲେ ଯାଇ ତାର ଶାନ୍ତି । ଏପରି ଭାବି ସେ ଦିନେ ସାନଭାଇ ଘରକୁ ଯାଇ ଦୁଃଖସୁଖ ପଚାରିବସିଲା । ଅକାଳେ ସକାଳେ ନାହିଁ, ବଡ଼ଭାଇ ଘରକୁ ଆସିଛନ୍ତି ଦେଖି ସାନଭାଇ ତାକୁ ଆଦର-ଚର୍ଚ୍ଚା କରି ଆସନରେ ବସାଇଲା, କଥାଭାଷା ହେଲା । ଦି'ଭାଇ ମିଶି ଖିଆପିଆ ବି କଲେ । ତା'ପରେ ବଡ଼ଭାଇ ସାନଭାଇକୁ ଏକାନ୍ତକୁ ଡାକିନେଇ କହିଲା ସେ ଜଙ୍ଗଲର ଗୋଟିଏ ସ୍ଥାନରେ ହଣ୍ଡାଏ ପୋତାଧନ ଥିବାର ଜାଣିପାରିଛି; କିନ୍ତୁ ଏତେ ବଡ଼ ହଣ୍ଡା ସେ ଏକା ଟେକିଆଣିପାରୁନାହିଁ । ଏପରି କାମରେ ପର ଲୋକକୁ ଲଗାଇବା ଉଚିତ ନୁହେଁ; ତେଣୁ ସାନଭାଇ ଯଦି ତା ସହିତ ବାହାରେ, ତେବେ ଦିହେଁ ମିଶି ହଣ୍ଡାଟା ରାତାରାତି ଘରକୁ ବୋହିଆଣନ୍ତେ— ଦିହେଁ ବାଣ୍ଟିକରି ଧନ ନିଅନ୍ତେ ।

ସଂସାରରେ ଏବେ କାହାର ଧନଲୋଭ ନାହିଁ ! ସାନଭାଇ ପୋତାଧନ ପାଇବା ଲୋଭରେ ବଡ଼ଭାଇ ସହିତ ବାହାରିପଡ଼ିଲା । ବଡ଼ଭାଇ କିନ୍ତୁ ସାନକୁ ଏପରି ଏକ ସ୍ଥାନକୁ ନେଇଗଲା, ଯେଉଁଠି ସେ ଆଗରୁ ଦଳେ ଗୁଣ୍ଡାଙ୍କୁ ଜଗାଇଥିଲା । ଏମାନେ ଯାଇ ସେଠାରେ ପହଞ୍ଚୁ ପହଞ୍ଚୁ ଗୁଣ୍ଡାମାନେ ସାନଭାଇକୁ ବାନ୍ଧିପକାଇଲେ । ସାନଭାଇକୁ ପ୍ରାଣରେ ମାରିଦିଅ ବୋଲି ଶୁଣାଇଦେଇ ବଡ଼ଭାଇ ଗାଆଁକୁ ପଳାଇଆସିଲା । ଗୁଣ୍ଡାମାନେ ଏ ଲୋକକୁ ଗୋଟାଏ ବସ୍ତାରେ ପୂରାଇ ମାରିଦେବେ ବୋଲି ଦୂରକୁ ବୋହି ନେଉଛନ୍ତି, ଦେଖିଲେ ସେପଟୁ ରାଜାଙ୍କ ସୈନ୍ୟମାନେ ଆସୁଛନ୍ତି । ଲୋକଟାକୁ ମାରିଲେ ସେ ପାଟିକରି ଡାକ ଛାଡ଼ିବ, ଫଳରେ ସେମାନେ ଧରାପଡ଼ିଯିବେ; ଏହି ଭୟରେ ସେମାନେ ତାକୁ ଆଉ ନମାରି ସଡ଼କ କଡ଼ ଗଛଡାଳରେ ଝୁଲାଇଦେଲେ ।

ଦଉଡ଼ିର ଗୋଟିଏ ମୁଣ୍ଡରେ ବସ୍ତାଟି ଝୁଲୁଥାଏ, ଆଉ ମୁଣ୍ଡଟି ଗଛ ଗଣ୍ଡିରେ ବାନ୍ଧିଦେଇ ସେମାନେ ସେଠାରୁ ପଳାଇଗଲେ। ଗୁଣ୍ଡାମାନେ ଗାଆଁକୁ ଯାଇ ସବୁକାମ ହୋଇଗଲା ବୋଲି ବଡ଼ଭାଇକୁ କହିଦିଅନ୍ତେ, ସେ ସେମାନଙ୍କୁ ସେମାନଙ୍କ ପାଉଣା ଦେଇ ଖୁସିରେ ରହିଲା।

ଏ ପଟେ ସାନଭାଇ ବସ୍ତା ବନ୍ଦ ହୋଇ ଗଛରେ ଝୁଲୁଥାଏ। ଗୁଣ୍ଡାଗୁଡ଼ାକ ଚାଲିଗଲେ ଜାଣି ସେ ତା ବଳକୌଶଳ ଲଗାଇ ବସ୍ତାରେ ଛୋଟ କଣାଟିଏ କରିପକାଇଲା। କଥାରେ ଅଛି, ଅଙ୍ଗୁଳି ପ୍ରବେଶରୁ ତ ବାହୁ ପ୍ରବେଶ। ଲାଗୁ ଲାଗୁ ଛୋଟ କଣାଟି ଟିକିଏ ବଡ଼ କଣା ହୋଇଗଲା। ବିଚରା ସେହି କଣାବାଟେ କୌଣସିମତେ ମୁଣ୍ଡଟି କାଢ଼ି ବାହାରକୁ ଚାହିଁଛି, ଦେଖିଲା ସେପଟୁ ଘୋଡ଼ା ଚଢ଼ି ତା ବଡ଼ଭାଇର ପୁଅ ଆସୁଛି। ପୁଅଟି ସହରରେ ରହି ପାଠ ପଢୁଥାଏ, ଶୀତ ଛୁଟି ହୋଇଯିବାରୁ ସେ ତା ବହିପତ୍ର ଧରି, ଘୋଡ଼ା ଚଢ଼ି ଗାଆଁକୁ ଫେରୁଥାଏ। ସେ ଟୋକା ଗଛ ପାଖାପାଖି ହେବାରୁ ବସ୍ତାଭିତରେ ରହି ଏ ଲୋକ ଗୀତ ଗାଇଲା – ''ଧନ୍ୟ ଧନ୍ୟ ଏ ଦୋଳା ଗଢ଼ିଛି ବିହି,
ସହଜେ ସବୁବିଦ୍ୟା ଯାଉଛି ହୋଇ।''

ଏ ଗୀତ ଶୁଣି ପାଠପଢ଼ା ଟୋକା ଘୋଡ଼ା ଅଟକାଇ କିଛି ସମୟ ସେ ଆଡ଼େ ଚାହିଁଲା; ପଚାରିଲା, ''ତୁମେ ସେଠାରେ କଣ କରୁଛ କି?''

ଝୁଲୁଥିବା ଲୋକ କହିଲା, ''କ'ଣ କରୁଛି? ଏଇଟା ପରା ଜ୍ଞାନ-ଦୋଳି; ଏଥିରେ ବସି ଆକାଶକୁ ଚାହିଁଦେଲେ ଆପେ ଆପେ ବିଦ୍ୟା ହୋଇଯାଉଛି। ତୁମ ଇସ୍କୁଲ ଶିକ୍ଷକ କି ପାଠ ପଢ଼ାଇବେ ରେ; ଏଥିରେ ବସିଗଲେ ଦଶ ବରଷର ପାଠ ଦୁଇଟା ଘଣ୍ଟାରେ କଣ୍ଠ-ପଇଠ ହୋଇଯିବ।''

ପାଠପଢୁଆ ପିଲା ତ, ତା ନିଜ କକେଇକୁ ବି ଚିହ୍ନିନଥାଏ। ଧନୀପୁଅ; ଗରିବ କକେଇକୁ ବା କାହିଁକି ଚିହ୍ନନ୍ତା? ଏ ଟୋକା ଆତୁର ହୋଇ କହିଲା, ''ଆହେ, ମୋର ବେଶି ଦରକାର ନାହିଁ ମ'... ଅଧଘଣ୍ଟାଟିଏ ମୋତେ ଛାଡ଼ – ଖାଲି ଗଣିତଟା ହୋଇଯାଉ।''

ଝୁଲୁଥିବା ଲୋକ କହିଲା, ''ହଉ, ପିଲାଲୋକ; ମନ କାହିଁକି କଷ୍ଟକରିବ। ଗଛ ଗଣ୍ଡିରେ ବନ୍ଧାଯାଇଥିବା ଦଉଡ଼ିମୁଣ୍ଡଟା ଖୋଲି ଏ ଦୋଳିଟା ତଳକୁ ଓହ୍ଲାଅ, ତା ପରେ ମୁଁ ତୁମକୁ ଏଥିରେ ବସାଇ ଝୁଲାଇଦେବି। କିନ୍ତୁ ହେଇଟି, ଅଧଘଣ୍ଟାଏ ପରେ ତୁମକୁ ଓହ୍ଲାଇଯିବାକୁ ପଡ଼ିବ।''

ପାଠପଢ଼ା ଟୋକା ନୁହେଁ ତ, ସେ ଏକ ବୋକା। ସେ ସହଜରେ ବିଦ୍ୟା ପାଇଯିବା ଲୋଭରେ ଗଛଗଣ୍ଡିରୁ ଦଉଡ଼ି ଖୋଲି ବସ୍ତାଟିକୁ ତଳକୁ ଓହ୍ଲାଇଦେଲା। ସାନଭାଇ ବସ୍ତାଭିତରୁ ବାହାରି ଆସି ସେ ଟୋକାକୁ କହିଲା, ''ଏ ଭିତରେ

ଶୀଘ୍ର ପଶିଯାଅ, ନ ହେଲେ ବିଦ୍ୟା ଉଡ଼ିପଳାଇବ।'' ସେ ଟୋକା ବସ୍ତାଭିତରେ ପଶୁ-ପଶୁ ଏ ଲୋକ ବସ୍ତାମୁହଁକୁ ଭଲକରି ବାନ୍ଧି କଣାଟିକୁ ଭଲକରି ସିଲାଇ କରିଦେଲା। ତା'ପରେ କହିଲା, ''ବାବୁ, ଦୋଳି ଭିତରେ ବସି ପାଠକୁ ଟିକିଏ ହେଜ କର।'' ଏପରି କହୁ କହୁ ସେ ଦଉଡ଼ି ଟାଣି ବସ୍ତାଟିକୁ ଗଛଡାଳରେ ଝୁଲାଇଦେଲା। କହିଲା, ''ତିନି ଦୁଗୁଣେ ଆଠ, ପଢ଼ ଏଥର ପାଠ।''

ଏ ଟୋକା ବସ୍ତାଭିତରେ ବନ୍ଦହୋଇ ପାଠ ହେଜ କରୁଥାଏ। ସାନଭାଇ ତା ଘୋଡ଼ାରେ ବସି ଗାଆଁକୁ ପଳାଇଗଲା।

## ଚତୁର ଲୋକ

ଦିନେ ଜଣେ ଲୋକ କୁଣିଆଘରକୁ ବାହାରିଲା। ଲୁଗାପଟା ପିନ୍ଧି ହାତରେ ଠେଙ୍ଗାଟିଏ ଧରି ଘରୁ ବାହାରିବା ପୂର୍ବରୁ ଭାର୍ଯ୍ୟା ତ୍ରିନାକୁ ଡାକି କହିଲା, ''ଆଲୋ, ମୁଁ ଟିକିଏ କୁଣିଆଘରକୁ ଯାଉଛି। କାଲି ଛାଡ଼ି ପରଦିନ ଫେରିବି। ଜଣେ ଗାଈବେପାରୀ ଆମ ଗାଈ ତିନୋଟି କିଣିବାକୁ ଆସିବ ବୋଲି କହିଥିଲା, ଏ ଭିତରେ ସେ ଆସିପାରେ।''

ଭାର୍ଯ୍ୟା କହିଲା, ''ଆସୁ, ଆସିଲେ ମୁଁ ଗାଈ ଦେଖାଇଦେବି।''

—''ଖାଲି ଦେଖାଇଦେଲେ କଣ ହେବ; ଠିକ୍ ଦରଦାମ କଷି ଗାଈ ବିକିବୁ। ହେଇଟି, ଟଙ୍କା ଦୁଇ ଶହରୁ ଯେପରି ପଇସାଟିଏ କମ୍ ନ ହୁଏ।''

—''ମଲା, ତେମେ ଯାହା କହିବ, ମୁଁ କିଆଁ ତା'ଠଉଁ କମରେ ବିକିବି ଯେ।''

—''ନା, ନା, କଥା କଣ କି, ତୁ ତ ନିପଟ ବୋକୀ। ପିଲାଦିନେ ଥରେ ପିଣ୍ଡାରୁ ଗଡ଼ିପଡ଼ିଥିଲୁ ଯେ ତୋ ମୁଣ୍ଡ ସେହିଦିନୁ ଖରାପ; କିନ୍ତୁ ଗାଈବିକାରେ ଯିମିତି ଆଦୌ ବୋକାକି ନଦେଖାଉ।''

—''ନାହିଁ ମ, ତମେ ନିଶ୍ଚିନ୍ତ ହୋଇ ଯାଅ। ମୁଁ କିଛି ଭୁଲ କରିବି ନାହିଁ।''

—''କିନ୍ତୁ ଯଦି କିଛି ଭୁଲ କଲୁ, ତେବେ ଦେଖିଥା ଏ ଠେଙ୍ଗା— ପିଠି ଫଟେଇଦେବି, ଜାଣିଥା।'' କହି ଲୋକଟି ବନ୍ଧୁଘରକୁ ଗଲା ଏବଂ ସେହିଦିନ ଉପରବେଳା ଗାଈ-ବେପାରୀ ଆସି ଗାଈ କିଣିବା ଲାଗି ପହଞ୍ଚିଲା। ଗାଈ ତିନିଟି ଦେଖିସାରିବାପରେ ଦରଦାମ କଷାକଷି ଚାଲିଲା। ସ୍ୱାମୀ କହିବା ପ୍ରକାରେ ତ୍ରିନା ଦୁଇଶହ ଟଙ୍କାରୁ ମୋଟେ ତଳକୁ ଖସିଲାନାହିଁ। ଶେଷରେ ବେପାରୀ କହିଲା, ''ହଁ,ହଁ, ତୁମରି କଥା ରହିଲା। ଗାଈ ତିନିଟାକୁ ମୁଁ ଦୁଇଶହ ଟଙ୍କାରେ ନେବି।''

ସ୍ୱାମୀଙ୍କୁ ଅନ୍ତତଃ ଏ ଗୋଟାଏ କାମରେ ଖୁସି କରିପାରିବ ଜାଣି ତ୍ରିନା କହିଲା – ''ତା'ହେଲେ ନିଅ।''

ଗାଈ ବେପାରୀ ଗାଈ ତିନିଟି ଫିଟାଇ ଅଡ଼େଇ ନେବା ବେଳକୁ ତ୍ରିନା ତାକୁ ପଛରୁ ଟାଣିଧରି ପଚାରିଲା, ''ହେଇଟି, ଟଙ୍କା ନଦେଇ ଗାଈ ନେଇ ପଳାଉଛ କ'ଣ ?''

ବେପାରୀ କହିଲା, ''ଆହା, ହା ! ଦେଖିଲ, ମୁଁ ତୁମକୁ ଏ ଯାଏ କହିନିଟି ? କଥା କଣ କି, ମୁଁ ଆସିଲାବେଳେ ମୋ ଗାଞ୍ଜିଆଟି ଆଣିବାକୁ ପାଶୋରିଗଲି; ଚିନ୍ତା କରନି; ମୁଁ ନିଜେ ଆଣି ଟଙ୍କା ଗଣି ଦେଇଯିବି।''

ତ୍ରିନା କହିଲା, ''ତା, କେମିତି ହେବ ?''

ବେପାରୀ କହିଲା, ''କଥାରେ ଯଦି ବିଶ୍ୱାସ ନାହିଁ, ତେବେ ବନ୍ଧକ ରଖିଦେଇ ଯିବି। ରାଜି ତ ?''

– ''କାହିଁ ? କି ବନ୍ଧକ ଦେଉଚ ଦିଅ।''

ବେପାରୀ କହିଲା, ''ମୁଁ ତ ଗାଈ ତିନିଟି କିଣିଲି। ତିନିଟା ନ ନେଇ ଦି'ଟା ନେଉଛି; ତୁମେ ଗୋଟିକୁ ବନ୍ଧକ ରଖ; ମୁଁ ଟଙ୍କା ଆଣିଦେଲେ, ତୁମେ ଗାଈ ଛାଡ଼ିବ। ତିନିଟା ଭିତରୁ ଯେଉଁଟି ଇଚ୍ଛା ସେଇଟି ରଖ।''

ତ୍ରିନା ମନକୁ କଥାଟି ପାଇଲା। ସେ ସବୁଠାରୁ ସାନ ଗାଈଟି ବାନ୍ଧିରଖି ଅନ୍ୟ ଗାଈ ଦୁଇଟି ଛାଡ଼ିଦେଲା। ଦୁଇଦିନ ପରେ ତା ସ୍ୱାମୀ ଆସି ଘରେ ପହଞ୍ଚୁ ପହଞ୍ଚୁ ପଚାରିଲା, ''କିଲୋ, ଗାଈ-ବେପାରୀ ଆସିଥିଲା ?''

ତ୍ରିନା କହିଲା, ''ଆସିଥିଲା, ଗାଈ କିଣିନେଲା।''

– ''କେତେ ଟଙ୍କାରେ ?''

– ''ତମେ ଯାହା କହିଥିଲ, ସେହି ଦୁଇଶହ ଟଙ୍କାରେ।''

– ''କାହିଁ, ଟଙ୍କା କାହିଁ ?''

– ''ଟଙ୍କା ଦେଇନାହିଁ।''

– ''ତା' ହେଲେ ? ତୁ ବୋକୀ ଟଙ୍କା ନ ରଖି ଗାଈ ଛାଡ଼ିଦେଲୁ କିମିତି ?''

ତ୍ରିନା ହସି ହସି କହିଲା, ''ନାହିଁ ଗୋ ନାହିଁ, ମୁଁ ବୋକାମି କରିନାହିଁ। ସେ ବନ୍ଧକ ରଖିଦେଇଯାଇଛି। କହିଛି, ଟଙ୍କା ଦେଇ ବନ୍ଧକ ମୁକୁଳେଇବ।''

– ''କି ବନ୍ଧକ ଲୋ ?''

– ''ସେ ତ ଗାଈ ତିନିଟା କିଣିଲା; କିନ୍ତୁ ଦୁଇଟି ଗାଈ ନେଲା, ଗୋଟିଏ ବନ୍ଧକରୂପେ ଛାଡ଼ିଦେଇଗଲା। ମତେ ସିନା ତୁମେ ଦିନରାତି ବୋକୀ ବୋକୀ କହିହେଉଛ– ହେଲେ ମୁଁ ବୋକୀ ନୁହେଁ। ମୁଁ ବାଛି ବାଛି ଛୋଟ ଗାଈଟି ରଖିଛି। ଛୋଟ ଗାଈ ଅଳ୍ପ ଖାଇବ; ତା ଗାଈକି ଖୋଇପେଇ ଆମେ କାହିଁକି

ଖର୍ଚ୍ଚାନ୍ତ ହେବା ?''

ଏ କଥା ଶୁଣି ତା ସ୍ୱାମୀ କି ଆଉ ଚୁପ୍ ହୋଇ ରହେ ? ସେ ଠେଙ୍ଗା ଉଞ୍ଚାଇ ତା ଉପରକୁ ମାଡ଼ିଆସିଲା । କହିଲା, ''ପରମ ପାଜୀ, ତୋ ମୁଣ୍ଡରେ ବୁଦ୍ଧି ବୋଲି ଟିକିଏ ବି ନାହିଁ ? ଲୋକଟା ଆମ ଗାଈ ଆମକୁ ବନ୍ଧକ ଦେଇ ଦି'ଦିଇଟା ଗାଈ ଠକିନେଇ ପଳାଇଗଲା— ଏତିକି ବୁଝିପାରିଲୁ ନାହିଁ ! ଆଜି ତତେ ପିଟି ପିଟି ପିଠିରୁ ଛାଲ ଉତାରି ଦେଉଛି— ରହ ।'' କିନ୍ତୁ ଲୋକଟି ମୁହଁରେ ସିନା ଏତେ କଥା କହିଗଲା, ହେଲେ ନିର୍ମାୟା ସ୍ତ୍ରୀଟିକୁ ମାରିବାକୁ ତା ହାତ ଗଲାନାହିଁ । ଶେଷରେ କହିଲା, ''ମୁଁ ଯାଇ ଦେଖେ; ଦୁନିଆରେ ଯଦି ତୋଠଉଁ ବଡ଼ ବୋକୀ ନ ଦେଖିବି, ତେବେ ତତେ ନିଶ୍ଚୟ ପିଟିବି ।'' ଏହା କହି ସେ ଘରୁ ବାହାରିପଡ଼ିଲା ।

ଗାଆଁର କିଛି ଦୂରରେ ବଡ଼ ସଡ଼କ । ସଡ଼କଧାରରେ ଥିବା ଗୋଟିଏ ଗଛରେ ବସି ସେ ଗଲା-ଅଇଲା ଲୋକଙ୍କୁ ଲକ୍ଷ୍ୟ କଲା । କିଛି ସମୟ ପରେ ଦେଖିଲା, ସଡ଼କଦେଇ ଜଣେ ସ୍ତ୍ରୀଲୋକ ଗୋଟିଏ ଶଗଡ଼ ଅଡ଼ାଇ ଆଣୁଛି; କିନ୍ତୁ ସେ ଶଗଡ଼ରେ ନ ବସି ବସିବା ଜାଗାରେ ଠିଆହୋଇ ବଳଦ ଅଡ଼ୋଉଛି । ତାର ହାବଭାବ ଦେଖି ଏ ଲୋକ ଭାବିଲା, ଏଇଟା ମୋ ତ୍ରିନାଠାରୁ ବି ବଡ଼ ବୋକୀ ଜଣାପଡୁଛି— ଟିକିଏ ପରୀକ୍ଷା କରି ଦେଖେ ! ଏପରି ଭାବି ସେ ସଡ଼କ ଉପରକୁ ଡେଇଁପଡ଼ିଲା ଓ ଶଗଡ଼ ଆଗରେ ଏପଟ ସେପଟ ହୋଇ ଧାଁଦଉଡ଼ କଲା । ସେ ଆଗକୁ ଦୌଡ଼ିଯାଉଛି, ପୁଣି ପଛକୁ ଦୌଡ଼ିଆସୁଛି ଦେଖି ସ୍ତ୍ରୀଲୋକଟି ପଚାରିଲା, ''କି ହେ, ଇମିତି କ'ଣ ହେଉଛ ? ତୁମ ଘର କେଉଁଠି କି ?''

ଲୋକଟି କହିଲା, ''ଆହେ, ମୁଁ ଏଠିକା ଲୋକ ନୁହେ . . . ସ୍ୱର୍ଗରୁ ତଳକୁ ଖସିପଡ଼ିଛି; ଆଉ ଉପରକୁ ଯିବାକୁ ବାଟ ପାଉନି ଯେ ଇମିତି ଧନ୍ଦି ହେଉଛି ।''

ସ୍ତ୍ରୀଟି କହିଲା, ''ସତେ ! କେତେଦିନ ହେଲା ଇମିତି ଧନ୍ଦି ହେଉଛ ବୋଧେ !''

—''ଏଇନେ ପରା ପଡ଼ିଗଲି !''

—''ତା'ହେଲେ ତ ତୁମେ ମୋ ସ୍ୱାମୀଙ୍କୁ ଦେଖିଥିବ— ସେ ଗଲା ଦି'ବରଷ ହେଲା ସ୍ୱର୍ଗପ୍ରାପ୍ତି ହେଲେଣି ଯେ ।''

ଲୋକଟି କହିଲା, ''ହଁ, ହଁ, ଦି'ବରଷ ହୋଇଗଲାଣି ତ । ସେ ବିଚରା ସ୍ୱର୍ଗରେ ଭାରି ହଇରାଣ ହେଉଛନ୍ତି । ସମସ୍ତଙ୍କୁ ତ ସେଠାରେ ଭଲ କାମ ମିଳୁନାହିଁ । ତାଙ୍କୁ ସେଠାରେ ମେଣ୍ଢାଛେଳି ଚରାଇବା କାମ ମିଳିଛି ।''

—''ମେଣ୍ଢା-ଛେଳିଙ୍କଠେଇଁ ତ ତାଙ୍କର ଭାରି ଆଦର । ହଇରାଣ କାହିଁକି ହେଉଛନ୍ତି ଯେ ?''

"ସ୍ୱର୍ଗ-ମେଣ୍ଢାଗୁଡ଼ାକ ତୁମ ଏଠା ମେଣ୍ଢାଙ୍କ ପରି ନୁହନ୍ତି ହୋ— ସେଗୁଡ଼ାକ ଏଣେ ବୋଇଲେ ତେଣେ ପଳାଉଛନ୍ତି; ତୁମ ସ୍ୱାମୀ ବିଚରା ସେଗୁଡ଼ାଙ୍କ ପଛରେ ଧାଇଁ ଧାଇଁ କଣ୍ଟା ଖୁଞ୍ଚା ଗୋଡ଼ିପଥର ଭିତରେ ଭାରି ହଇରାଣ ହୋଇଯାଉଛନ୍ତି। ଲୁଗାପଟାଗୁଡ଼ାକ ଚିରି ଲେଙ୍କଡ଼ା ହୋଇଗଲାଣି। ଆମ ସ୍ୱର୍ଗକୁ ତ ଦରଜିଙ୍କୁ ଆସିବାକୁ ମନା; ଲୁଗାପଟା ଚିରିଗଲେ ଆଉ ସିଲେଇ କରିବ କିଏ, କହୁନା ?"

ସ୍ତ୍ରୀଟି ଆଖିରୁ ଲୁହ ଝରାଇ କହିଲା, "ଆହା ଲୋ... କି ହନ୍ତସନ୍ତ ନ ହେଉଥିବେ ସତେ! ହେ ବାବୁ, ତୁମ ଗୋଡ଼-ହାତ ଧରୁଛି; ମୋର ଗୋଟିଏ ଉପକାର କରିଦିଅନ୍ତନି ?"

—"କ'ଣ ... କହୁନା ?"

—"ତୁମେ ଏଇଠି ଥାଅ କି, ମୁଁ ଘରକୁ ଯାଇ ତାଙ୍କର ଗରମ କୋଟ୍‌ଟା ଆଣିଦେବି ଯେ ଗଲାବେଳେ ତାଙ୍କ ପାଖକୁ ନେଇଯିବ। କୋଟ୍‌ଟି ନୂଆପରି ଅଛି; କିଛି ଦିନ ହେଲେ ଚଳିଯିବେ।"

ଲୋକଟି କହିଲା, "ମୁଁ ନେବାକୁ ମନାକରୁନି; କିନ୍ତୁ କଥା କଣ କି, ଆମ ସ୍ୱର୍ଗର ସେ ଯେଉଁ ଫାଟକବାଲାଟି ଅଛି, ସେ ଭାରି କଡ଼ା— ବାହାରୁ କିଛି ଜିନିଷ ନେଇ ଗଲେ ସେ ମୋତେ ଛାଡ଼ିବନାହିଁ।"

ସ୍ତ୍ରୀଲୋକଟି ଚିନ୍ତାରେ ପଡ଼ିଗଲା। କିଛି ସମୟ ଭାବିସାରି କହିଲା, "ତା ହେଲେ ଆଉ ଗୋଟିଏ କାମ କରିଦିଅ ଯେ ସବୁ ଅଡୁଆ ତୁଟିଯିବ। ଆମର ଗହମ ବିକାହୋଇଥିଲା ଯେ, ଥକିରେ ଥକିଏ ଟଙ୍କା ହୋଇଛି। ମୁଁ ଘରକୁ ଯାଇ ସେତକ ଆଣିଦିଏ; ତୁମେ ଅଣ୍ଟିତଳେ ଲୁଚାଇ ନେଇଯିବ, ଫାଟକବାଲା ଦେଖିପାରିବନାହିଁ। ମୋ ସ୍ୱାମୀଙ୍କି ଦେଇଦେଲେ ସେ ଲୁଗାପଟା କିଣି ପିନ୍ଧିବେ।"

ଲୋକଟି ଦେଖିଲା, ଏ ସ୍ତ୍ରୀଟି ସତରେ ତା ଭାର୍ଯ୍ୟାଠାରୁ ବେଶୀ ବୋକୀ। ମନେମନେ ହସି ସେ କହିଲା, "ହଉ... ଶୀଘ୍ର ଆଣ; ମତେ ଅନେକ ବାଟ ଯିବାକୁ ହବ।"

ସ୍ତ୍ରୀଟି ତାକୁ ଧନ୍ୟବାଦ ଦେଇ ଶଗଡ଼ ନେଇ ଘରକୁ ବାହାରିଲା। ଏଥର ଲୋକଟି ପଚାରିଲା, "ଗୋଟିଏ କଥା ପଚାରନ୍ତି; କିଛି ଭାବିବ ନାହିଁ।"

—"କି କଥା ?"

—"ତୁମେ ଶଗଡ଼ରେ ନବସି, ଏପରି ଠିଆହୋଇ ଶଗଡ଼ ଅଡ଼ାଉଛ କାହିଁକି ?"

ସ୍ତ୍ରୀଟି କହିଲା, "ମୁଁ ବସିପଡ଼ିଲେ ବଳଦଙ୍କୁ ବେଶି ବୋଝ ହୋଇଯିବ ବୋଲି ଠିଆହୋଇ ଶଗଡ଼ ଅଡ଼ାଉଛି। ସ୍ୱର୍ଗଲୋକରୁ ଆସି ଏତକ ବୁଝିପାରୁନାହଁ ?"

'ହେ... ଦଇବ, ସଂସାରରେ ଇମିତି ବୋକୀ ବି ଅଛନ୍ତି !!' ଭାବି ଲୋକଟି କହିଲା, 'ହଉ, ମୁଁ ଏଠି ବସିଛି; ତୁମେ ଶୀଘ୍ର ଟଙ୍କା ନେଇଆସ।"

କିଛି ସମୟ ପରେ ସ୍ତ୍ରୀଲୋକଟି ଥଳିରେ ଥକିଏ ଟଙ୍କା ଆଣି ଲୋକଟିକୁ ଦେଇଦେଲା । ଲୋକଟି ମନେମନେ ଖୁସି ହୋଇ ଟଙ୍କାତକ ରଖିବାପରେ ସ୍ତ୍ରୀଟି ଘରକୁ ଫେରିଗଲା । ଘରେ ଯାଇ ପହଞ୍ଚିବାବେଳକୁ ତା ପୁଅ ବିଲରୁ ଫେରୁଥାଏ । ସେ ମାଆକୁ ଦେଖି ପଚାରିଲା, ‘‘ମାଆ, ତୁ ଏତେବେଳଯାଏ କୁଆଡ଼େ ଯାଇଥିଲୁ କି ?’’

ମା’ ସକଳ କଥା କହିଯିବାପରେ ପୁଅ କହିଲା, ‘‘ଆଲୋ, ଗଲାବେଳେ ମତେ ଟିକିଏ କହିଗଲୁନି । ମୁଁ ବାପାଙ୍କ ବିଷୟରେ ଆହୁରି କେତେ କଥା ପଚାରି ବୁଝିଥାନ୍ତି । ପୁଣି ବୁଢ଼ାଲୋକ, ଚାଲିଚାଲି ଥକିଯାଉଥିବେ; ଟଙ୍କା ତ ପଠାଇଲୁ, ଆମ ଘୋଡ଼ାଟା ବି ପଠାଇଦେଇଥିଲେ ସେ ଆରାମରେ କାମ କରିପାରନ୍ତେ । ସେ ଲୋକ କେଉଁଠି ଅଛି ?’’

ମାଆ ସ୍ୱର୍ଗରୁ ଖସିପଡ଼ିଥିବା ଲୋକକୁ ଯେଉଁଠି ଦେଖିଥିଲା ସେ ସ୍ଥାନଟି କହିଦେବାକ୍ଷଣି ପୁଅ ସେଠାକୁ ଘୋଡ଼ା ଛୁଟାଇ ଦୌଡ଼ିଲା । ସେ ସେଠାରେ ପହଞ୍ଚିବା ବେଳକୁ ଲୋକଟି ଥଳିର ଟଙ୍କା ଗଣିସାରି ଘରକୁ ଯିବାକୁ ବାହାରୁଥାଏ । ବୋକୀପୁଅ ସେ ଲୋକକୁ ଦେଖି ପଚାରିଲା, ‘‘ଏ ପାଖରେ ସ୍ୱର୍ଗରୁ ଜଣେ ଲୋକ ଖସିପଡ଼ିଥିଲେ; ସେ କୁଆଡ଼େ ଗଲେ କି ?’’

ଲୋକଟି କହିଲା, ‘‘ହଁ, ହଁ, ସେ ଏଇଠି ଥିଲେ ଯେ, ଅଧଘଣ୍ଟାଏ ହେଲା ଏଠାରୁ ପଳାଇଗଲେଣି ।’’

— ‘‘କୁଆଡ଼େ ଗଲେ ?’’

— ‘‘କହୁଥିଲେ, ସେ ପାହାଡ଼ ଉପରେ ଚଢ଼ିଗଲେ, ସ୍ୱର୍ଗ ସେଠାରୁ ପାଖ ପଡ଼ିବ । ସେହି ପାହାଡ଼ ଆଡ଼କି ଗଲେ ତ; ତୁମେ ସେହିଆଡ଼କୁ ଯାଅ, ତାଙ୍କ ଭେଟ ପାଇବ ।’’

ବୋକୀପୁଅ କହିଲା, ‘‘ମୁଁ ତ ତାଙ୍କୁ ଚିହ୍ନିନି, ମୁଁ ବିଲରେ କାମ କରି କରି ହାଲିଆହୋଇ ଘରକୁ ଆସିବାବେଳକୁ ମାଆଠାରୁ ଏ ଖବର ପାଇଲି । ମାଆ ସେ ଲୋକଙ୍କ ହାତରେ ବାପାଙ୍କ ପାଖକୁ ଟଙ୍କା-ପଇସା କଣ ପଠାଇଛନ୍ତି । ମୁଁ ତାଙ୍କଠାରୁ ବାପାଙ୍କ ବିଷୟରେ ଟିକିଏ ଭଲମନ୍ଦ ବୁଝି ଦରକାର ହେଲେ ଘୋଡ଼ାଟି ବି ବାପାଙ୍କ ପାଖକୁ ପଠାଇଦିଅନ୍ତି ବୋଲି ଭାବୁଥିଲି । . . . ତୁମେ ଟିକିଏ ଉପକାର କରିଦେବ କି ?’’

ଲୋକଟି ଦେଖିଲା, ଇଏ ଯିମିତି ମାଆକୁ ସିମିତି ପୁଅ । ପଚାରିଲା, ‘‘କ’ଣ କହୁନା ?’’

— ‘‘ମୁଁ ଆଉ ହାଲିଆ ହୋଇ ସେ ଅଚିହ୍ନା ଲୋକକୁ କେତେ ଖୋଜିବି ? ତୁମେ ତ ଚିହ୍ନିଛ, ମୋ ଘୋଡ଼ାରେ ବସି ଟିକିଏ ତାଙ୍କ ପାଖକୁ ଯାଇ ମୋ

ବାପାଙ୍କ ଖବର-ଅନ୍ତର ଭଲକରି ବୁଝନ୍ତୁ; ଦରକାରହେଲେ ଘୋଡ଼ାଟି ବି ବାପାଙ୍କ ପାଖକୁ ପଠାଇଦିଅନ୍ତୁ।''

ଏପରି ମଉକା ଛାଡ଼ିବାର ନୁହେ ଜାଣି ଲୋକଟି ଘୋଡ଼ାରେ ଚଢ଼ି କହିଲା, ''ତୁମେ ଏଠି ଅପେକ୍ଷା କରିଥାଅ; ମୁଁ ସେ ଲୋକ ସାଙ୍ଗରେ କଥାଭାଷା କରି ଫେରିବି।''

ସେ ଘୋଡ଼ା ନେଇ ତା ଘରକୁ ଚାଲିଗଲା। ସଡ଼କପାଖ ଗଛମୂଳେ ଅଧରାତିଯାଏଁ ଅପେକ୍ଷାକରି ବସିବାପରେ ବୋକାପୁଅ ଭାବିଲା, 'ସ୍ୱର୍ଗରୁ ଖସିପଡ଼ିଥିବା ଲୋକଟା ପାହାଡ଼ ଉପରଯାଏଁ ଚଢ଼ିଯାଇଥିବ କି କ'ଣ ଯେ, ଏ ଲୋକଟି ତା ପାଖକୁ ଯିବାକୁ ଏତେ ସମୟ ନେଲାଣି। ଯାହାହେଉ, ମୋ ବାପାଙ୍କ ପାଖରେ ଘୋଡ଼ାଟି ପହଞ୍ଚିଗଲେ ସେ ମୋ ଉପରେ ଭାରି ଖୁସିହେବେ– ଏଥର ମୁଁ ଘରକୁ ଯାଏ।'

# ଫ୍ରେଡେରିକ୍ ଓ କ୍ୟାଥେରାଇନ୍

ଚାଷୀଟିଏ ଥାଏ ଯେ ତା ନାଆଁ ଫ୍ରେଡେରିକ୍। ସେ ଅଳ୍ପ କିଛିଦିନ ତଳେ ବାହା ହୋଇଥାଏ; ତା ଭାର୍ଯ୍ୟା ନାଆଁ କ୍ୟାଥେରାଇନ୍। ଦିନେ ଫ୍ରେଡେରିକ୍ କ୍ୟାଥେରାଇନ୍‌କୁ କହିଲା, ''ଆଲୋ, ମୁଁ ବିଲକୁ ଯାଉଛି। ଫେରିଲାବେଳକୁ ଭୋକ ହେଉଥିବ; କଣ ଟିକିଏ ରନ୍ଧାବଢ଼ା କରିଥିବୁ।''

–''ମଲା, ଏକଥା କହିବାକୁ ଅଛି! ତୁମେ ଯାଅ; ଫେରିଲାବେଳକୁ ମୁଁ ରାନ୍ଧିବାଢ଼ି ବସିଥିବି।'' କହି କ୍ୟାଥେରାଇନ୍ ତା କାମରେ ଲାଗିଗଲା।

ସ୍ୱାମୀ ଫେରିବାବେଳ ହେଲାରୁ ସେ ଦି'ଖଣ୍ଡି ମାଂସ ଭାଜିବସିଲା। ମାଂସ ଭାଜି ହୋଇ ଲାଲ ପଡ଼ିଆସୁଥାଏ। ଚୁଲିରେ ବି ନିଆଁ ମରିଯାଇଥାଏ। କ୍ୟାଥେରାଇନ୍ ଭାବିଲା– 'ମାଂସଟା ଗରମ କରେଇରେ ପଡ଼ିଥାଉ। ମୁଁ ଏ ଭିତରେ ଯାଇ ତଳେ ଚାଉଳି ମଦ ନେଇଆସେ।' ସେ ତ ଥଣ୍ଡା ଦେଶ; ସମସ୍ତଙ୍କର ଘରେ ମଦ ରାନ୍ଧନ୍ତି। ଏଥିପାଇଁ ଅଲଗାରେ ବଖୁରିଏ ଛୋଟ ଘର ଥାଏ; ସେଥିରେ ମଦବଣା ବସିଥାଏ। ଦରକାର ବେଳେ ସେହି ବଣାରେ ଲାଗିଥିବା କଳ ମୋଡ଼ି ମଦ ବାହାର କରାଯାଏ। କ୍ୟାଥେରାଇନ୍ ମଦବଣାର କଳ ମୋଡ଼ିଦେଇ ତା ତଳେ ଡାଳ ଥୋଇଦେଲା। ଧାର ଧାର ହୋଇ ମଦ ବୋହିଚାଲିଥାଏ, ଏତିକିବେଳେ ତାର ମନେପଡ଼ିଲା ଯେ କୁକୁରଟା ବନ୍ଧା ହୋଇନାହିଁ, କାଳେ ମାଂସଖଣ୍ଡିକ ଖାଇଯିବ। ତେଣୁ ସେ ଚୁଲିମୁଣ୍ଡକୁ ଦୌଡ଼ିଗଲା। ଠିକ୍ ସେତିକିବେଳକୁ କୁକୁର ଆସି ମାଂସ

ଦି’ଖଣ୍ଡ ନେଇ ପଳାଉଛି। କୁକୁରକୁ ଦେଖି କ୍ୟାଥେରାଇନ୍ ତା ପଛରେ ଦୌଡ଼ିଲା। କୁକୁର ପାଟିରୁ କି ମାଂସ ଖସେ। କ୍ୟାଥେରାଇନ୍ କୁକୁର ପଛରେ ଦୌଡ଼ି ଦୌଡ଼ି ହାଲିଆ ହୋଇ ଶେଷକୁ କହିଲା, “ଯା, ଆଉ ପାରିବିନାହିଁ—!” ଲୋକେ ଯାହା କହନ୍ତି, ‘ଗଲାଣି ତ ଗଲା କଥା ରେ ସଙ୍ଗାତ’ —ସେଇଆ ହେଲା। ବିଚାରୀ ହାଲିଆ ହୋଇ ଘରକୁ ଫେରିବାବେଳକୁ ଡାଳ ଭରି ହୋଇ ବଣା ଗୋଟିକଯାକ ମଦ ତଳେ ବୋହିଗଲାଣି। ଘର ଚଟାଣରେ ମଦ ବୋହି ଏପରି ଅସନା ହୋଇଛି ଦେଖିଲେ ସ୍ୱାମୀ ବିରକ୍ତ ହେବେ। କଣ କରି ଚଟାଣ ଶୁଖାଇବ ବୋଲି ଭାବୁ ଭାବୁ ତାର ମନେପଡ଼ିଲା ଗତ ହାଟପାଳି ଦିନ ତାଙ୍କର ବସ୍ତାରେ ବସ୍ତାଏ ଅଟା କିଣାଯାଇଛି। ସେ ଭାବିଲା, ସେହି ଅଟାରୁ କିଛି ଛିଞ୍ଚିଦେଲେ ସେଥିରେ ମଦଗୁଡ଼ାକ ଶୋଷି ହୋଇଯିବ ଯେ, ଘର ଶୁଖିଯିବ। ତେଣୁ ସେ ଅଟାବସ୍ତାଟି ସେଠାକୁ ନେଇଆସିଲା। କିନ୍ତୁ ବସ୍ତାଟି ଆଣି ଏପରି ଅବାଗରେ ଥୋଇଦେଲା ଯେ, ସେଇଟି ମଦଡାଳ ଉପରେ ଓଲଟିପଡ଼ିଲା। ଡାଳରେ ଥିବା ମଦତକ ବି ଢାଳିଗଲା ଦେଖି କ୍ୟାଥେରାଇନ୍ ଭାବିଲା, ‘ହଁ, ବଣାକ ମଦ ତ ବୋହିଗଲା, ଡାଳକ କଣ ରହନ୍ତା! ...ଭାଗ୍ୟକୁ ଅଟାବସ୍ତାକ ଥିଲା ବୋଲି ରକ୍ଷା ହେଲା। ନହେଲେ ତ ଘରଟାଯାକ ଏଇନେ ମଦ ବୋଲି ଲହଡ଼ି ଭାଙ୍ଗନ୍ତା!’ ଏହା ଭାବି ସେ ବସ୍ତାକ ଅଟା ପକାଇ ମଦତକ ପୋଛିପାଛି ଦେଲା। ଘର ଶୁଖିଆସିବା ବେଳକୁ ଫ୍ରେଡେରିକ୍ ବିଲରୁ ଫେରି କହିଲା, “କାହିଁ ଲୋ, କଣ ରାନ୍ଧିଛୁ ବାଢ଼ିଦେଲୁ।”

କ୍ୟାଥେରାଇନ୍ କହିଲା, “ଆହେ, କଣ ଆଉ ବାଢ଼ିବି ତୁମ ପାଇଁ? ଦି’ଖଣ୍ଡ ମାଂସ ଭାଜି ରଖଥିଲି ଯେ, ତାକେ ମଦ ଆଣିବି ବୋଲି ମଦବଣା ପାଖକୁ ଯାଇଛି, ଏପଟେ ବାଡ଼ିପୋଡ଼ା କୁକୁର ଆସି ସେତକ ନେଇଗଲା; ଯେତେ ଗୋଡ଼େଇଲି, ମୁଁ କଣ ତାକୁ ପାରିଲି!! ହେଲେ ମୁଁ କୁକୁରକୁ ଗୋଡ଼େଇଗଲାବେଳକୁ ସେପଟେ ବଣାକ ମଦ ତଳେ ବୋହିଗଲା ଯେ ଅଟାବସ୍ତାକ ଢାଳି ମୁଁ ପରା ଘର ଶୁଖାଉଥିଲି; ଆଉ ରାନ୍ଧିଲି କେତେବେଳେ। ସତ କହିଲ, ଘରଟା ଶୁଖିଯାଇନି?”

ଫ୍ରେଡେରିକ୍ ବିଚରା କପାଳରେ ହାତମାରି କହିଲା, “ହଇ ଲୋ, ଘରର ଘରଣୀ ହୋଇ ତୁ ଏଭଳି କାମ କିପରି କଲୁ କହିଲୁ? ମାଉଁସ ଗଲା, ମଦ ଗଲା; ତା ସାଙ୍ଗରେ ଅଟାବସ୍ତା ବି ନଷ୍ଟ କରିଦେଲୁ!!”

କ୍ୟାଥେରାଇନ୍ କହିଲା, “ଆଗୋ, ମୁଁ କଣ ସେ କଥା ଜାଣିଛି? ଇମିତି କଲେ ନଷ୍ଟ ହୋଇଯାଏ ବୋଲି ତୁମେ ତ ଦିନେ କହିନା; ମୁଁ କଣ କରିବି?”

ଫ୍ରେଡେରିକ୍ ଭାବିଲା, “କ୍ୟାଥେରାଇନ୍ ଯଦି ଏମିତି ଘରକରଣା କରେ, ତେବେ ମୁଁ ଉଚ୍ଛନ୍ନ ହୋଇଯିବି। ଏବହୁଁ ସାବଧାନ ନହେଲେ, ଭବିଷ୍ୟତରେ

ଲେଡ଼ିଗୁଡ଼ କହୁଣିକୁ ବୋହିଯିବ।'' ତା ଘରେ କିଛି ସୁନା ମୋହର ଥିଲା; ସେତକ କାଳେ କ୍ୟାଥେରାଇନ୍ ଖଇରାତ୍ କରିଦେବ ଭାବି ଫ୍ରେଡେରିକ୍ ସେତକ ନେଇ ବାଗିବଗିଚ଼ାରେ ପୋତିଦେଲା; ସ୍ତ୍ରୀକୁ କହିଲା, ''ବୁଝିଲୁ, ଏ ହଳଦିଆ ବୋତାମଗୁଡ଼ାକ ଏଇଠି ପୋତାହୋଇ ରହିଲା; ତୁ କେବେ ଏଥିରେ ହାତ ଦେବୁନାହିଁ।'' କିଛିଦିନ ପରର କଥା। ଫ୍ରେଡେରିକ୍ ବିଲକୁ ଯାଇଛି, ଚିନାମାଟିର ଗିନା ଥାଳି ବିକିବା ଲାଗି ଦୁଇଜଣ ଠକ ବେପାରୀ ଆସି ତା ଘରେ ପହଞ୍ଚିଲେ। ଘରେ ମରଦମାନେ ନଥିବା ବେଳେ ଠକ ବେପାରୀମାନେ ମାଇପିଙ୍କୁ ଠକିବା ଲାଗି ଏପରି ଆସି ପହଞ୍ଚନ୍ତି। ବେପାରୀଙ୍କ ଡାକ ଶୁଣି କ୍ୟାଥେରାଇନ୍ କହିଲା, ''କି ସୁନ୍ଦର ଗିନା ଥାଳି ହୋଇଛି!! ମୋର କିଣିବାକୁ ମନ, ହେଲେ ପଇସା ତ ମୋ ପାଖରେ ନାହିଁ, କିଣିବି କିପରି? ତୁମେ ଯଦି ପଇସା ବଦଳରେ ହଳଦିଆ ବୋତାମ ନେବ, ତେବେ ମୁଁ କିଛି କିଣନ୍ତି।''

ବେପାରୀ ଦୁଇଜଣ ହଳଦିଆ ବୋତାମ କଣ ବୁଝିପାରିଲେନାହିଁ। ସେମାନେ 'କାହିଁ, କିପରି ହଳଦିଆ ବୋତାମ ଦେଖାଇଲ' ବୋଲି ପଚ଼ାରିବାରୁ କ୍ୟାଥେରାଇନ୍ କହିଲା, ''ମୋ ସ୍ୱାମୀ ମତେ ସେ ବୋତାମ ଛୁଇଁବାକୁ ମନାକରିଛନ୍ତି। ତୁମର ଯଦି ଦେଖିବାକୁ ଇଚ୍ଛା, ତେବେ ଆସ ଆମ ବଗିଚ଼ାରେ ସେଗୁଡ଼ାକ ପୋତାହୋଇଛି; ଜାଗାଟି ଦେଖାଇଦେବି ଯେ ତୁମେ ଖୋଳି ଦେଖିପାରିବ।''

ବେପାରୀ ଦୁଇଜଣ ବଗିଚ଼ାକୁ ଯାଇ ମାଟି ଖୋଳି ସୁନା ମୋହରତକ ବାହାର କରିନେଲେ। ସେତକ ନିଜ ମୁଣିରେ ପକାଇଦେଇ କହିଲେ, ''ଏଗୁଡ଼ାକୁ ତ ଆଜିକାଲି ଲୋକେ ପସନ୍ଦ କରୁନାହାନ୍ତି, ତଥାପି ଆମେ ନେଉଛୁ; ତୁମେ କି କି ବାସନ ନେବ ବାଛ।'' କ୍ୟାଥେରାଇନ୍ ଚାରି-ଛଅଟି ଚିନାମାଟି ବାସନ ବାଛି ରଖିବାପରେ ଠକ ବେପାରୀମାନେ ସେଠାରୁ ପଳାଇଗଲେ। କିଛିସମୟପରେ ଫ୍ରେଡେରିକ୍ ବିଲରୁ ଫେରିଲାରୁ କ୍ୟାଥେରାଇନ୍ ନୂଆ ଗିନା ଥାଳି ଦେଖାଇ କହିଲା, ''କେଡ଼େ ସୁନ୍ଦର ହୋଇଛି ଦେଖିଲଣି!''

ଫ୍ରେଡେରିକ୍ ପଚ଼ାରିଲା, ''କି ଲୋ, ଏସବୁ କେଉଁଠୁ ଆଣିଲୁ?''

କ୍ୟାଥେରାଇନ୍ କହିଲା, ''ମୁଁ ହଳଦିଆ ବୋତାମ ଦେଇ ବେପାରୀଙ୍କଠାରୁ ରଖିଲି।''

ଫ୍ରେଡେରିକ୍ କପାଳକୁ ନିନ୍ଦି କହିଲା, ''ଆଲୋ କ୍ୟାଥେରାଇନ୍, କି ଦୁର୍ବୁଦ୍ଧି ନ କଲୁ!! ମୁଁ ପରା ସେ ବୋତାମରେ ହାତ ଦେ'ନା ବୋଲି ତତେ କହିଥିଲି?''

କ୍ୟାଥେରାଇନ୍ ଆଖି ଛୁଇଁ କହିଲା, ''ହେ ଦଇବ, ମୁଁ ଯଦି ସେ ବୋତାମକୁ ଛୁଇଁଥିବି, ମୋ ଆଖି ଫୁଟିଯିବ। ମୁଁ ସେ ବେପାରୀଙ୍କୁ ଜାଗାଟି ଦେଖାଇଦେଲାରୁ ସେମାନେ ଖୋଳି ବୋତାମ ବାହାରକଲେ। ମୁଁ ସେଥିରେ ଜମା ହାତ ଦେଇନି।''

—"ଆଲୋ, ବୋକୀ, ସେଗୁଡ଼ାକ ସୁନା ଲୋ! ଆମ ଘରର ସବୁ ଧନସମ୍ପଦ ଦେଇ ତୁ ଏ ଥାଳିଆ ଦୁଇଟା କିଣିପକାଇଲୁ! ଓଃ, ତତେ ନେଇ ମୁଁ କି ଘର କରିବି, କହ!!"

କ୍ୟାଥେରାଇନ୍ ଜିଭ କାମୁଡ଼ି ପକାଇ କହିଲା, "ମତେ ହେଲେ ତେମେ ସେତକ କହିଥାନ୍ତ! ମୁଁ ବୋକୀ କଣ ଏତେ କଥା ଜାଣେ? ହେଲେ, ଦୁଃଖ କରନି, ସେ ବେପାରୀଗୁଡ଼ାକ ଏବେ ଏବେ ଗାଆଁ ଛାଡ଼ି ପଳାଇଗଲେ, ବଣରେ ଲୁଚିଥିବେ। ଆମେ ସେମାନଙ୍କୁ ଗୋଡ଼ାଇଲେ ବଣ ଭିତରେ ଧରିପକାଇବା।"

—"ସତେ! ତା'ହେଲେ ଶୀଘ୍ର ବାହାର, ମୁଁ ତ ସେମାନଙ୍କୁ ଚିହ୍ନି ନାହିଁ; ତୁ ସାଙ୍ଗରେ ନଗଲେ ଚୋରଙ୍କୁ ଧରି ହେବନାହିଁ। ଏଣେ ମତେ ଭୋକହେଲାଣି। ତୁ କିଛି ରୁଟି ସାଙ୍ଗକୁ ଦି'ମୁଣ୍ଡା ଛେନା ଓ ମେଞ୍ଚେ ଲହୁଣି ଧରିଥା; ବାଟରେ ଖାଇବା।" କହି ଫ୍ରେଡେରିକ୍ ଘରୁ ବାହାରିପଡ଼ିଲା। ଯାଉ ଯାଉ ବାଟରେ ବଣ ପାହାଡ଼ ପଡ଼ିଲା। ସରୁ ପାହାଡ଼ିଆ ରାସ୍ତାରେ ଶଗଡ଼ ଯିବାବେଳେ ଦୁଇ ପାଖ ଗଛରେ ଅଖ ବାଜି ସ୍ଥାନେ ସ୍ଥାନେ ଗଛ ଗଣ୍ଡି ଖଣ୍ଡିଆ ହୋଇଯାଇଥାଏ। କ୍ୟାଥେରାଇନ୍ ଏସବୁ ଦେଖି ମନେ ମନେ କହିଲା, "ଆହା... ହା, ଲୋକେ କେଡ଼େ ନିଷ୍ଠୁର ନୁହନ୍ତି ଯେ ଗଛଗୁଡ଼ିକୁ ଏପରି ଘାଉଆ କରିଦେଉଛନ୍ତି! ଏ ଗଛ ଆଉ ବଢ଼ିବଟି?" ଏହା କହି ସେ ଗଣ୍ଡିଲି ଫିଟାଇ ତା ଲହୁଣି ମେଞ୍ଚାରୁ କିଛି କିଛି ନେଇ ଗଛର ଖଣ୍ଡିଆ ସ୍ଥାନରେ ଲଗାଇବାକୁ ଲାଗିଲା। କିନ୍ତୁ ଗଛରେ ଲହୁଣି ଲଗାଉ ଲଗାଉ ଗଣ୍ଡିଲିରେ ଗୋଡ଼ ମାରିଦେଲା ଯେ ସେଥିରୁ ମୁଣ୍ଡାଏ ଛେନା ପାହାଡ଼ ତଳକୁ ଗଡ଼ିଗଲା। ଘଟଣା ଦେଖି କ୍ୟାଥେରାଇନ୍ କହିଲା, "ଗଲା, ଗଲା! ମୁଁ କଣ ଏ ଛେନା ପଛରେ ଦୌଡ଼ିପାରିବି ଯେ ତାକୁ ଧରିବି? ଆଉ ଛେନାମୁଣ୍ଡାଟି ତା ପଛରେ ପଠାଇଦିଏ ଯେ ଦୌଡ଼ି ଦୌଡ଼ି ଯାଇ ତାକୁ ଧରି ଆଣିବ। ଉପରକୁ ଉଠି ନପାରିଲେ ଜଣକ ପାଖକୁ ଦୁଇଜଣ ହୋଇ ଯିବେ ଯେ ଦିହେଁ ମିଶି ଘରକୁ ପଳାଇବେ— ବାଟରେ ଡରିବେ ନାହିଁ କି ଚମକିବେ ନାହିଁ।" ଏହା ଭାବି ସେ ଥିବା ଆଉ ଛେନାମୁଣ୍ଡାଟି ପାହାଡ଼ ତଳକୁ ଗଡ଼ାଇଦେଲା।

ସେପଟେ ଫ୍ରେଡେରିକ୍ ଆଗରେ ଚାଲି ଚାଲି ଭୋକ ହେବାରୁ ଗୋଟିଏ ଗଛ ତଳେ ବସିପଡ଼ିଥାଏ। କ୍ୟାଥେରାଇନ୍ ଯାଇ ସେଠାରେ ପହଞ୍ଚୁ ପହଞ୍ଚୁ ସେ କହିଲା, "କାହିଁ, ଖାଇବାକୁ ଦେଲୁ; ଭୋକ ହେଲାଣି।"

କ୍ୟାଥେରାଇନ୍ ଶୁଖିଲା ରୁଟି କାଢ଼ିଦେବାରୁ ଫ୍ରେଡେରିକ୍ ଛେନା ଓ ଲହୁଣି କାହିଁ ବୋଲି ପଚାରିଲା। କ୍ୟାଥେରାଇନ୍ ଯେତେବେଳେ ତା କରିଥିବା କୀର୍ତ୍ତି କହିଗଲା, ସେତେବେଳେ ଫ୍ରେଡେରିକ୍ କପାଳକୁ ନିନ୍ଦିବା ଛଡ଼ା ଆଉ କଣ ବା କରନ୍ତା?" ଏ ବୋକାପଣିଆ ଦେଖି ସେ ସ୍ତ୍ରୀକୁ ପଚାରିଲା, "ଆଲୋ, ଘରୁ

ଆସିଲାବେଳେ କବାଟ ବନ୍ଦକରି ଆସିଥିଲୁଟି ?''

କ୍ୟାଥେରାଇନ୍ କହିଲା, ''କାହିଁ, ମତେ ତ ତୁମେ କବାଟ ବନ୍ଦ କରିବା କଥା କହିନା ! ମୁଁ କାହିଁକି କବାଟ ବନ୍ଦ କରନ୍ତି ?''

—''ହେ ଦଇବ ! ହଇ ଲୋ, ତୁ ଏଡ଼ିକି ବୋକୀ !! ହଉ, ଶୀଘ୍ର ଚାଲିଯାଆ, ଘରୁ କିଛି ଖାଇବା ଜିନିଷ ଆଣିବୁ। ଆଉ ହେଇଟି, ଆସିଲାବେଳେ, ତତେ କାନେ କାନେ କହିରଖୁଛି, ବାଗି କବାଟରେ କିଳିଣୀ ଦେବୁ, ଦାଣ୍ଡ କବାଟରେ ତାଲା ଦେଇ ଆସିବୁ।'' ସ୍ୱାମୀ କହିବା ପ୍ରକାରେ କ୍ୟାଥେରାଇନ୍ ଘରକୁ ଚାଲିଗଲା। କି ଖାଇବା ଜିନିଷ ନେବ ବୋଲି ଭାବୁ ଭାବୁ ମନେ ପଡ଼ିଲା, ଫ୍ରେଡେରିକ୍ ଚଣା ଓ ଝରା ଗୁଡ଼ ଖାଇବାକୁ ଭଲପାଏ। ତେଣୁ ସେ ମୁଣିରେ ମୁଣିଏ ଚଣା ଓ ବୋତଲେ ଝରା ଗୁଡ଼ ଧରିଲା। ତା'ପରେ ବାଗି କବାଟରେ କିଳିଣୀ ଦେଇ ଦାଣ୍ଡ କବାଟରେ ତାଲା ପକାଇବାକୁ ବାହାରିଲା। କିନ୍ତୁ ତାଲା ପକାଉ ପକାଉ ସେ ଭାବିଲା, 'କବାଟଟାକୁ କାଳେ କିଏ ନେଇଯିବ ବୋଲିହିଁ ଫ୍ରେଡେରିକ୍ ସେଥିରେ ତାଲା ପକାଇବା ଲାଗି କାନେ କାନେ କହିଛି। କିନ୍ତୁ ତାଲା ପକାଇଦେଲେ ଚୋରମାନେ କାଳେ ତାଲା ବି ଭାଙ୍ଗି ଦେଇପାରନ୍ତି; କବାଟଟା ସାଙ୍ଗରେ ନେଇଗଲେ ସବୁ ଅଡୁଆ ତୁଟିଯିବ; କବାଟଟା ଆମ ପାଖରେ ଥିଲେ କେଉଁ ଚୋର ଆସି ନେଇଯିବ, ମୁଁ ଦେଖିବିନି।'' ତେଣୁ ସେ ଦାଣ୍ଡକବାଟଟି ଉମଣି କବଜାରୁ ଟେକି ବାହାର କରିଦେଲା ଏବଂ ମୁଣ୍ଡରେ ମୁଣ୍ଡାଇ ଫ୍ରେଡେରିକ୍ ପାଖକୁ ଚାଲିଆସିଲା। ଅବସ୍ଥା ଦେଖି ଫ୍ରେଡେରିକ୍ ପଚାରିଲା, ''କି ଲୋ, ଇଏ କଣ କଲୁ ? ତୁ କବାଟରେ ତାଲା ପକାଇ ଆସନ୍ତୁ କଣ, କବାଟଟାକୁ ଉମଣିରୁ କାଢ଼ି ନେଇ ଆସିଲୁ !! ଆଲୋ, ଘରଟା ମେଲା ପଡ଼ିଲା, ଯେ ପାରି ସେ ଘରେ ପଶିଯିବ ନାହିଁ ?''

କ୍ୟାଥେରାଇନ୍ କହିଲା, ''ମତେ କଣ ତୁମେ ସେ କଥା କହିଲ ? କବାଟଟା ପାଖରେ ଥିଲେ ଚୋର ନେଇପାରିବନାହିଁ ବୋଲି ମୁଁ ନେଇଆସିଲି।''

ଫ୍ରେଡେରିକ୍ ବିରକ୍ତ ହୋଇ କହିଲା, ''ତୁ ଆଣିଛୁ, ତୁ ବୋହିବୁ। ମୁଁ ମୋଟେ ସେ କବାଟ ବୋହିବି ନାହିଁ।''

କ୍ୟାଥେରାଇନ୍ କହିଲା, ''ହେଲା ଏବେ, ମୁଁ କବାଟ ବୋହିବି; କିନ୍ତୁ ଏ ଚଣା ମୁଣି ଆଉ ଝରା ଗୁଡ଼ ବୋତଲଟା ମୁଁ ବୋହିପାରିବିନାହିଁ। ଚଣା ମୁଣି ଆଉ ଗୁଡ଼ ବୋତଲକୁ ମୁଁ କବାଟ ଶିକୁଳିରେ ବାନ୍ଧି ଝୁଲାଇଦେବି। ଫ୍ରେଡେରିକ୍ ଏ ବୋକାମିକୁ ବା କାହିଁକି ମନା କରନ୍ତା ? ସ୍ତ୍ରୀ କବାଟ ମୁଣ୍ଡାଇ ପଛରେ ଚାଲିଥାଏ, ସ୍ୱାମୀ ଆଗରେ ବାଟ କାଢ଼ି କାଢ଼ି ଯାଉଥାଏ। ଦିହେଁ ଏପରି ବଣ ତମାମ ବୁଲି ବୁଲି କାହିଁ କେଉଁଠି ଚୋରଙ୍କ ଦେଖାପାଇଲେ ନାହିଁ। ଶେଷକୁ

ବେଳ ବୁଡ଼ି ଅନ୍ଧାର ହେବାକୁ ବସିବାରୁ ଦିହେଁ ଗୋଟିଏ ବଡ଼ ବରଗଛରେ ଚଢ଼ି ଏକ ମୋଟା ଡାଳରେ ବସିପଡ଼ିଲେ। ବୋକୀ କ୍ୟାଥେରାଇନ୍ ଗଛରେ ଚଢ଼ି ବି କବାଟଟା ମୁଣ୍ଡାଇଥାଏ। କିନ୍ତୁ କିଛି ସମୟ ଯାଇଛି କି ନାହିଁ, ସେ ଗଛ ମୂଳକୁ ସେହି ଚୋର ଦୁଇଟା ଆସିଗଲେ— ଯେଉଁମାନେ କ୍ୟାଥେରାଇନ୍‌କୁ ଠକି ତା ଘରୁ ସୁନାତକ ନେଇ ଆସିଥିଲେ। ଶୀତଦାଉରୁ ରକ୍ଷାପାଇବା ଲାଗି ସେ ଦୁଇଜଣ ଗଛତଳେ ଗୋଟିଏ ଧୁନି କରି ସେ ପାଖରେ ଶୋଇପଡ଼ିଲେ। ବିରାଡ଼ି କପାଳକୁ ଶିକା ଛିଣ୍ଡିଲା; କ୍ୟାଥେରାଇନ୍ ସେ ଦୁହିଁକୁ ଚିହ୍ନାଇଦେବାକ୍ଷଣି ଫ୍ରେଡେରିକ୍ ଚୁପ୍‌କିନା ଗଛରୁ ଓହ୍ଲାଇ କେତେଟା ଗୋଡ଼ି ଗୋଟାଇ ପୁଣି ଥରେ ଉପରକୁ ଉଠିଗଲା। ସେ ଗଛ ଉପରୁ ଚୋରଙ୍କ ଉପରକୁ ଦି'ଚାରିଟା ଗୋଡ଼ି ପକାଇ ଦେଉ ଦେଉ, ଚୋର ଦୁଇଟା ନିଆଁ ପାଖରେ ଘାଲେଇ କରି ପଡ଼ିରହି କୁହାକୁହି ହେଲେ, ''ରାତି ପାହିଗଲାଣି କି କ'ଣ, ପାହାନ୍ତିଆ ପବନରେ ବରଫଳଗୁଡ଼ିକ ଟପ୍‌ଟପ୍ ହୋଇ ଝଗିପଡୁଛି କି!''

ଏ ଭିତରେ କ୍ୟାଥେରାଇନ୍ ମୁଣ୍ଡକୁ କବାଟ ବୋଝ ଖୁବ୍ ବାଧିଲାଣି। ସେ କିନ୍ତୁ ଭାବିଲା, ଚଣାମୁଣିଟା ଝୁଲୁଥିବାରୁ କବାଟଟା ଭାରି ହେଉଛି। ତେଣୁ ସେ ଚୁପ୍‌ଚାପ୍ କରି ସ୍ୱାମୀକୁ କହିଲା, ''ହଇ ହେ, ମୁଁ ଆଉ ଏ ଚଣାବୋଝ ବୋହି ପାରିବିନାହିଁ, ତଳେ ପକାଇଦେଉଛି।''

ଫ୍ରେଡେରିକ୍ କହିଲା, ''ନା, ଲୋ, ନା, ଏବେ ନୁହେଁ; ତଳେ ପଡ଼ିଲେ ଆମେ ଧରାପଡ଼ିଯିବା।''

କ୍ୟାଥେରାଇନ୍ କହିଲା, ''ମୁଁ ଯେ ଆଉ ବୋହି ପାରୁନାହିଁ।''

''ତା'ହେଲେ ଦେ ପକାଇ ଦେ।'' —ଫ୍ରେଡେରିକ୍ କହିଲା। କ୍ୟାଥେରାଇନ୍ ଚଣାମୁଣିଟା ଖୋଲି ଚଣାଗୁଡ଼ାକ ତଳକୁ ଫୋପାଡ଼ି ଦେବାରୁ ସେଗୁଡ଼ାକ ଟପ୍‌ଟାପ୍ ହୋଇ ପତର ଉପରେ ପଡ଼ି ତଳକୁ ଖସିଲା। ଚୋର ଦୁଇଟା ଅନ୍ଧାର ରାତିରେ ଏ ଶବ୍ଦ ଶୁଣି କୁହାକୁହି ହେଲେ, ''କୁଆପଥର ବର୍ଷିଲାଣି; ତୋଫାନ ଆସିବ କି କଣ!''

ଚଣା ଫୋପାଡ଼ିଦେବା ପରେ ବି ବୋଝ ହାଲୁକା ହେଉନାହିଁ ଦେଖି କ୍ୟାଥେରାଇନ୍ ସ୍ୱାମୀକୁ ଚୁପ୍‌ଚାପ୍ କରି ପୁଣି କହିଲା, ''ହଇ ହେ, ମୁଁ ଏ ଝରା ଗୁଡ଼ ବୋତଲଟା ଆଉ ବୋହିପାରୁନାହିଁ। ତଳକୁ ପକାଇଦେଉଛି।''

ସ୍ୱାମୀ କହିଲା, ''ନା ଲୋ, ନା, ତଳେ ଗୁଡ଼ ପଡ଼ିଲେ ଆମେ ଧରାପଡ଼ିଯିବା।''

କିନ୍ତୁ କ୍ୟାଥେରାଇନ୍ କହିଲା, ''ମୁଁ ତ ବୋହିପାରୁନାହିଁ।''

—''ତାହେଲେ ଦେ ତଳେ ଢାଳି ଦେ।''

କ୍ୟାଥେରାଇନ୍ ବୋତଲ ଖୋଲି ଝରାଗୁଡ଼ତକ ତଳେ ଢାଳିଦେବାରୁ ସେଗୁଡ଼ାକ

ପତରରେ ପଡ଼ି ଟପ୍‌ଟପ୍ ହୋଇ ତଳକୁ ଆସିଲା। ସେ ଶବ୍ଦ ଶୁଣି ଚୋର ଦୁଇଟା ଚେହେଁକି ଉଠି କହିଲେ, "ଏ! କୁଆପଥର ବର୍ଷା ସାଙ୍ଗକୁ ଗଛରୁ କାକର ଝରିଲାଣି!! ଏଥର ପାଗ ଖରାପ ହେଲା।"

ଚଣା ଗଲା, ଗୁଡ଼ ଗଲା; ତଥାପି ବୋଝ ନ କମିବାରୁ କ୍ୟାଥେରାଇନ୍ ଜାଣିପାରିଲା ଯେ କବାଟ ବୋଝଟାହିଁ ବାଧୁଛି। ତେଣୁ ସେ ସ୍ୱାମୀକୁ କହିଲା, "ହଇ ହେ, ମୁଁ ତ ଆଉ ଏ କବାଟଟା ବୋହିପାରୁନାହିଁ। ତଳେ ପକାଇ ଦେଉଛି।"

—"ନାହିଁ ଲୋ, ନାହିଁ; ତଳେ ପକା ନାହିଁ; ଆମେ ଧରାପଡ଼ିଯିବା।"

କିନ୍ତୁ କ୍ୟାଥେରାଇନ୍ ଆଉ ବୋଝ ସମ୍ଭାଳି ନ ପାରି କବାଟଟାକୁ ମୁଣ୍ଡରୁ ଖସାଇଦେଲା। ସେଇଟା ଡାଳପତ୍ରରେ ବାଜି ଭୀଷଣ ଶବ୍ଦ କରି ତଳକୁ ଖସୁ ଖସୁ ଚୋର ଦୁଇଟା, "ଆରେ ଏ ଗଛରେ ଭୂତ ଅଛି; ଆମକୁ ଖାଇଲା ରେ ବାପା?" କହି ନିଜ ଗୋଡ଼ହାତ ନେଇ ସେଠାରୁ ଏପରି ଭାଗିପଳାଇଲେ ଯେ, ସେମାନଙ୍କର ଆଉ ପତ୍ତା ମିଳିଲାନାହିଁ। କିଛିସମୟପରେ ଫ୍ରେଡେରିକ୍ ଓ କ୍ୟାଥେରାଇନ୍ ଗଛରୁ ଓହ୍ଲାଇ ଦେଖନ୍ତି ତ ଗଛ ମୂଳେ ଧୂନି ପାଖରେ ସେମାନଙ୍କର ସବୁତକ ସୁନା ମୋହର ଥୁଆହୋଇଛି। ଏଥର ଦେଖ, ସେ ଦିହିଁଙ୍କ ଖୁସି।

## ବୁଦ୍ଧିମତୀ

ଝିଅଟିଏ ଥାଏ ଯେ, ସେ ବଡ଼ ଚାଲାଖ ଚତୁର ବୋଲି ତା ବାପ ମାଆ ଚାରିଆଡ଼େ କହିବୁଲନ୍ତି। ଖାଲି ସେତିକି ନୁହେଁ, ଝିଅକୁ ନାଆଁ ଦେଇଥାନ୍ତି ବୁଦ୍ଧିମତୀ। ପିଲାରୁ ବଡ଼ ହୋଇ ଯେତେବେଳେ ବୁଦ୍ଧିମତୀର ବାହା ବୟସ ହେଲା ସେତେବେଳେ ମାଆ କହିଲା, "ଝିଅଟିର ହାତକୁ ଦି'ହାତ କରିଦେଲେ ମୁଁ ଉଦ୍ଧାରପାଆନ୍ତି।" ବାପ କହିଲା, "ଝିଅ ହାତ ଧରିବାକୁ କିଏ ଜଣେ ଆସିଲେ ହେଲା।" ଇମିତି ବରଟିଏ ପାଇଁ ଖୋଜଖବର ନେଉ ନେଉ ଦିନେ ଜଣେ କନ୍ୟା-ପ୍ରାର୍ଥୀ ଆସି ପହଞ୍ଚିଗଲା। ତା ନାଆଁ ହ୍ୟାନ୍‌ସ। ହ୍ୟାନ୍‌ସ ଝିଅର ଗୁଣଗ୍ରାମ କଥା ପଚ଼ାରୁ ପଚ଼ାରୁ ମାଆ କହିଲା, "ସତରେ ପୁଅ, ମୋ ଝିଅଟି ଭାରି ଚତୁରୀ; ଉଡ଼ିଯାଉଥିବା ଚଢ଼େଇର ପର ଗଣିଦେବ।" ବାପ କହିଲା, "ବହିଯାଉଥିବା ପବନର ଶିର ଗଣିଦବ, କହୁନା।" ହ୍ୟାନ୍‌ସ କହିଲା, "ସେଇ କଥା, ମୁଁ ଖାଲି ମୁହଁ ସୁନ୍ଦର ଦେଖି ଝିଅ ବାହା ହେବି ନାହିଁ; ମୁଁ ଚାଷୀ ଲୋକ,

ଝିଅର ବୁଦ୍ଧିବୃତ୍ତି ଭଲ ବୋଲି ଦେଖିଲେ ବାହା ହେବି।''

ବାପ ମାଆ ହ୍ୟାନ୍ସକୁ ନାନା ଆଶା-ଭରସା ଦେଇ ଜଳଖିଆ ଖୋଇ ବସାଇଲେ। ମାଆ ବୁଦ୍ଧିମତୀକୁ କହିଲା, ''କାହିଁ ଲୋ, ଝଅଟ ଯାଇ ତଳ ଗମ୍ଭୀରିରୁ ମଦ ଡାଳେ ନେଇଆସିଲୁ। (ମଦଟା ଥଣ୍ଡା ଦେଶର ସାଧାରଣ ପାନୀୟ।) ଝିଅ ସଙ୍ଗେ ସଙ୍ଗେ ଡାଳଟି ଧରି ସେଥିରେ ବାଜା ବଜେଇ ବଜେଇ ତଳ ଗମ୍ଭୀରିକୁ ଚାଲିଗଲା। ମଦବଣାର କଳ ମୋଡ଼ିଦେଲାରୁ ସେଥିରୁ ଟିକିଏ ଟିକିଏ ହୋଇ ମଦ ଝରି ଆସିଲା। କେତେ ନଇଁକରି ଠିଆହେବ ବୋଲି ସେ କଳ ତଳେ ଡାଳ ବସାଇଦେଲା; ନିଜେ ଚଉକିରେ ବସି ଛାତକୁ ଅନିଷା କଲା। ଛାତକୁ ଚାହୁଁ ଚାହୁଁ ଦେଖିଲା, କଡ଼ିଉପରେ ଗୋଟିଏ ଛୋଟ ଶାବଳ ଥୁଆ ହୋଇଛି; ଘର ତିଆରି କରିବା ବେଳେ ରାଜମିସ୍ତ୍ରି ବୋଧହୁଏ ଭୁଲରେ କେବେଠୁଁ ସେ ଶାବଳଟି ସେଠାରେ ଛାଡ଼ିଯାଇଛି। କିନ୍ତୁ ଏବେ ଶାବଳ ଦେଖି ବୁଦ୍ଧିମତୀ ମନେ ମନେ କହିଲା, ସେ ଯଦି ହ୍ୟାନ୍ସକୁ ବାହାହେବ, ତେବେ କିଛିଦିନପରେ ତାଙ୍କର କୁନିପୁଅଟିଏ ଜନ୍ମ ହେବ; ସେ କୁନିପୁଅଟିକୁ କେବେ ମଦ ଆଣିବାଲାଗି ଏ ତଳ ଗମ୍ଭୀରିକୁ ପଠାଇଥିବା ବେଳେ ଯଦି ଏ ଶାବଳଟି ଖସିପଡ଼ିବ, ତେବେ ତ ସର୍ବନାଶ! ପୁଅ ମୁଣ୍ଡରେ ଶାବଳ ପଡ଼ିଲେ ଆଉ ସେ ପୁଅ ବଞ୍ଚିବଟି!! ହାୟ ରେ! ହାୟ! ଦଇବ କି ଦୁଃଖ ନ ଦେବ ସତେ! ମନେ ମନେ ଏପରି କହୁ କହୁ ବୁଦ୍ଧିମତୀ ସେଇଠି ବସି ଭୋ-ଭୋ ହୋଇ କାନ୍ଦିବାକୁ ଲାଗିଲା। ଏଣେ ହ୍ୟାନ୍ସ ଜଳଖିଆ ଖାଇବ ବୋଲି ବସିଛି। ଝିଅ ମଦ ଆଣିବାକୁ ଡେରି କଲା ଦେଖି ବାପା ଡେରିର କାରଣ ବୁଝିବା ଲାଗି ଚାକରାଣୀକୁ ପଠାଇଲା। ଚାକରାଣୀ ଯାଇ ଦେଖେ ତ ବୁଦ୍ଧିମତୀ ଚଉକିରେ ବସି ଭୋ-ଭୋ ହୋଇ କାନ୍ଦୁଛି। ସେ କାନ୍ଦର କାରଣ ବୁଝିନପାରି ପଚାରିଲା, ''ଆଲୋ ମଣି, ହେଲା କ'ଣ? ଇମିତି କାନ୍ଦୁଛୁ କାହିଁକି?''

ବୁଦ୍ଧିମତୀ କହିଲା, ''ହଇ ଲୋ, ଅଧିକ ଆଉ କଣ ହୁଅନ୍ତା! ସେ କଡ଼ି ଉପର ଶାବଳଟା ଦେଖୁଛୁଟି? ମୁଁ ହ୍ୟାନ୍ସକୁ ବାହାହେଲେ ଆମର ଯଦି କୁନିପୁଅ ହୁଏ, ସେ ପୁଅ ଏ ଗମ୍ଭୀରିକୁ ମଦ ନେବା ପାଇଁ ଆସିଥିବା ବେଳେ ଯଦି ଏ ଶାବଳଟା ଖସିପଡ଼ିବ, ମୋ ପୁଅ ଆଉ ବଞ୍ଚିବଟି... ହେଁ... ଏଁ... କି ଦୁଃଖ ନହେବ! କି ଦୁଃଖ ନ ହେବ ଲୋ ମାଆ!!'' —କହୁ କହୁ ପୁଣି କାନ୍ଦିଉଠିଲା। ତାର ସେ କାନ୍ଦଣା ଦେଖି ଚାକରାଣୀ କପାଳରେ ହାତ ମାରି ''ଖାମିଦେ କି ବୁଦ୍ଧିମତୀ ଝିଅ ଜନ୍ମ କରି ନଥିଲେ'' କହି ଭୋ-ଭୋ ହୋଇ କାନ୍ଦିଉଠିଲା।

ଝିଅ ପଛରେ ଚାକରାଣୀ ଗଲା, ତଥାପି ମଦ ଗିଲାସେ ଆସିଲା ନାହିଁ;

କଥା କଣ ବୁଝିବା ଲାଗି ବୁଦ୍ଧିମତୀର ବାପା ଚାକରଟୋକାକୁ ପଠାଇଲା। ଚାକର ଟୋକା ତଳ ଗମ୍ଭୀରିକୁ ଯାଇ ଦେଖେ ତ ମାଲିକାଣୀ, ଚାକରାଣୀ ଦିହେଁ ମିଶି କାନ୍ଦୁଛନ୍ତି। କାହିଁକି କାନ୍ଦୁଛନ୍ତି ବୋଲି ବୁଝୁ ବୁଝୁ ସବୁକଥା ଶୁଣି ସେ ବିଚରା ସେଇଠି ବସିପଡ଼ି ମୁଣ୍ଡରେ ହାତ ମାରି, "ବୁଦ୍ଧିମତୀକି କି ବୁଦ୍ଧି ଦେଲୁ ରେ ଦଇବ !" କହି ଭୋ-ଭୋ ହୋଇ କାନ୍ଦିବାକୁ ଲାଗିଲା।

ଏଣେ ବିଳମ୍ବର କାରଣ ଜାଣି ନପାରି ବୁଢ଼ା ବାପ ନିଜ ଭାର୍ଯ୍ୟାକୁ କହିଲା, "ଆଲୋ, ତୁ ଟିକିଏ ଗଲୁ ଭଲା ! ଝିଅ ମଦ ପାଇଁ ଗଲା ଯେ, ଏତେ ବେଳଯାଏଁ ଫେରିଲା ନାହିଁ; କଥା କଣ ବୁଝିବୁ।"

ସ୍ୱାମୀ କଥା ଶୁଣି ବୁଢ଼ୀ ଲସରପସର ହୋଇ ତଳ ଗମ୍ଭୀରିକି ଚାଲିଲା। ଯାଇ ଦେଖେ ତ ଝିଅ, ଚାକର, ଚାକରାଣୀ ତିନିଟାଯାକ ବସି କଇଁକଇଁ ହୋଇ କାନ୍ଦୁଛନ୍ତି। "ଆଲୋ, କାହିଁକି ଏପରି କାନ୍ଦୁଛୁ? କାହିଁକି ଏପରି କାନ୍ଦୁଛୁ??" ବୋଲି ବାରମ୍ବାର କରି ପଚାରିବା ପରେ ଝିଅ କାନ୍ଦ ବନ୍ଦକରି କହିଲା, "କାନ୍ଦିବୁନି, ଆଉ କଣ କରିବୁ ବୋଉ? ସେ ଶାବଳ ଦେଖୁଛୁ? ହ୍ୟାନ୍ସକୁ ମୁଁ ବାହାହେଲେ ମୋର ଯଦି ପୁଅଟିଏ ହେବ, ସେ କେବେ ଏ ଗମ୍ଭୀରିକୁ ମଦ ନେବାପାଇଁ ଆସିଥିବା ବେଳେ ଏ ଶାବଳ ଯଦି ଖସିପଡ଼ିବ, ମୋ ପୁଅ ଆଉ ପ୍ରାଣରେ ବଞ୍ଚିବଟି? ନିଶ୍ଚୟ ମରିଯିବ ଲୋ ବୋଉ, ନିଶ୍ଚୟ ମରିଯିବ ଲୋ– ଓଃ !!" କହୁ କହୁ ପୁଣି ଥରେ ଭୋ-ଭୋ ହୋଇ କାନ୍ଦିଉଠିଲା। ଝିଅର କାନ୍ଦ ଦେଖି ମାଆର ବୁଦ୍ଧି ହଜିଗଲା ଯେ, ସେ ବି ଭୋ-ଭୋ ହୋଇ କାନ୍ଦିବାକୁ ଲାଗିଲା, "ଆଲୋ, ମୁଁ କି ବୁଦ୍ଧି କରିବି ଲୋ !"

ଏତେ ଲୋକ ଗଲେ, ତଥାପି ମଦ ଟିକିଏ କାହିଁକି ଆଣିପାରୁନାହାନ୍ତି, ତାହା ଜାଣିବା ପାଇଁ ଏଥର ବାପ ବୁଢ଼ା ନିଜେ ତଳ ଗମ୍ଭୀରିକୁ ଚାଲିଲା। ସେଠାରେ ଯାଇ ପହଞ୍ଚୁ ପହଞ୍ଚୁ ଏ କାନ୍ଦଣା-ଲହରୀ ଦେଖି "କଥା କଣ, କଥା କଣ" ବୋଲି ପଚାରିହେଲେ। ବାପାଙ୍କ କଥା ଶୁଣି ଝିଅ ଶାବଳ ଦେଖାଇ ଯେତେବେଳେ ସମସ୍ତ କାରଣ କହିଗଲା, ସେତେବେଳେ ବାପ ବି ବୁଦ୍ଧିମତୀର ବୁଦ୍ଧି ଦେଖି କପାଳରେ ହାତ ମାରି କାନ୍ଦିବାକୁ ଲାଗିଲା। ଏଣେ ହ୍ୟାନ୍ସ ଜଳଖିଆ ଟେବୁଲ ପାଖରେ ଏକାଟିଆ ବସିଥାଏ। ସମସ୍ତେ କୁଆଡ଼େ ଗଲେ ବୋଲି ଖୋଜୁ ଖୋଜୁ ସେ ଏ କାନ୍ଦ-ବୋବାଳି ଶୁଣି ମଦ ଗମ୍ଭୀରି ଭିତରେ ପଶିଗଲା। ସେଠାରେ ଘଟଣା କଣ ବୋଲି ପଚାରିବାରୁ ଶାଶୁ ଶ୍ୱଶୁର କି ଉତ୍ତର ଦେବେ ବୁଝି ନପାରି କପାଳକୁ ନିନ୍ଦିଲେ। ବୁଦ୍ଧିମତୀ କହିଲା, "ହ୍ୟାନ୍ସ, ହ୍ୟାନ୍ସ, ତୁମେ ତ ଏ ଶାବଳଟା ଦେଖିପାରୁଥିବ ! ତୁମେ କହିଲ, ଆମ ବାହାଘର ପରେ ଯଦି ପୁଅଟିଏ ଜନ୍ମହେବ, ସେ ପୁଅ ବଡ଼ ହୋଇ କେବେ ଯଦି ଏ ଗମ୍ଭୀରିକି

ମଦ ନେବା ପାଇଁ ଆସିଥିବ, ସେତେବେଳେ ଏ ଶାବଳ ଯଦି ବା ମୁଣ୍ଡରେ ଖସିପଡ଼ିବ, ତେବେ କି ଦୁଃଖ ନହେବ ସତେ! ମୋ ପୁଅମୁଣ୍ଡ ତ ଛତୁ ହୋଇଯିବ ଲୋ, ଛତୁ ହୋଇଯିବ। ହ୍ୟାନ୍‌ସ, ମୁଁ କି ବୁଦ୍ଧି କରିବି କୁହ?'' କହି କହି ସେ ପୁଣି କାନ୍ଦିବାକୁ ଲାଗିଲା।

ସବୁ ଶୁଣିସାରି ହ୍ୟାନ୍‌ସ କହିଲା, ''ଶ୍ୱଶୁର, ମୋ ଘରକରଣା ପାଇଁ ଏତିକି ବୁଦ୍ଧି ଯଥେଷ୍ଟ; ଅଧିକରୁ କଣ ପାଇବି? ମୁଁ ବୁଦ୍ଧିମତୀ କି ବାହା ହୋଇପଡ଼ିବି।''

ବଡ଼ ଧୁମ୍‌ଧାମରେ ବୁଦ୍ଧିମତୀ ସହିତ ହ୍ୟାନ୍‌ସର ବାହାଘର ହୋଇଗଲା। ବୋହୂକୁ ଘରକୁ ନେବାର କିଛି ଦିନ ପରେ ଦିନେ ହ୍ୟାନ୍‌ସ କହିଲା, ''ଦେଖ ବୁଦ୍ଧିମତୀ! ଆର ଗାଁ ପଧାନଘର ଗହମ କଟା ହେବ ବୋଲି ସେ କେତେ ଜଣ ମୂଲିଆ ଖୋଜୁଛି। ମୁଁ ଯାଉଛି ସେଠାରେ ମୂଲ ଲାଗି କିଛି ପଇସାପତ୍ର ଆଣିବି; ଆମ ଘରେ ଅଟା ନାହିଁ; ତୁ ଏ ଭିତରେ ଆମ ବିଲକୁ ଯାଇ କିଛି ଗହମ କାଟିଆଣ ଯେ, ପେଷିଦେଲେ ଅଟା କରିଦେବା।''

ବୁଦ୍ଧିମତୀ କହିଲା, ''ଠିକ୍ ଅଛି; ତୁମେ ନିଶ୍ଚିନ୍ତରେ ଯାଅ, ମୁଁ ଘରକାମ ତୁଲେଇଦେବି।'' ହ୍ୟାନ୍‌ସ ମୂଲ ଲାଗିବାକୁ ଚାଲିଯିବା ପରେ ବୁଦ୍ଧିମତୀ ନିଜପାଇଁ କିଛି ଖାନାପିନା ତିଆରି କରି ମୁଣ୍ଡରେ ଘୋଟଣା ଧରି ବିଲକୁ ପଳାଇଲା। ବିଲରେ ଯାଇ ପହଞ୍ଚିବାପରେ ମନେ ମନେ ଭାବିଲା, ''ଆଗେ ଖାଇପିଇ ସାରିଲେ ପଛେ ଗହମ କାଟିବି, ନା ଗହମ କାଟି ସାରିଲେ ଖିଆପିଆ କରିବି? କେଉଁଟା କଲେ ଠିକ୍ ହେବ– ଆଗ ଖାଇବି, ନା ଆଗ କାଟିବି? ଆଗ କାଟିବି, ନା ଆଗ ଖାଇବି?'' ଏପରି ଭାବୁ ଭାବୁ ସେ ଘୋଟଣା ଖୋଲି ପେଟେ ଖାଇଦେଲା। ଖାଇ ଦେଉ ଦେଉ ଦେହଟା ଭାରୀଲାଗି ହାଇ ଉପରେ ହାଇ ମାଡ଼ିଆସିଲା। ଏଥର ଭାବିଲା, ଆଗ ଟିକିଏ ଶୋଇପଡ଼ିଲେ, ତା'ପରେ ଉଠି ଗହମ କାଟିପକାଇବି। ଏପରି ଭାବୁ ଭାବୁ ସେ ବିଲ ହୁଡ଼ାରେ ଘୁଙ୍ଗୁଡ଼ିମାରି ଟାରିକାତ ମେଲାଇ ଶୋଇପଡ଼ିଲା। ସେ ସେପରି ଶୋଇଛି, ଏପଟେ ସନ୍ଧ୍ୟା ହୋଇଗଲା। ହ୍ୟାନ୍‌ସ ଘରକୁ ଫେରି ଭାର୍ଯ୍ୟାକୁ ନ ଦେଖି ବିଲକୁ ଗଲା। ବିଲରେ ଭାର୍ଯ୍ୟାର କର୍ମକୁଶଳତା ଦେଖି ସେ ଘୋଟଣା ବାସନତକ ଘରକୁ ନେଇଆସିଲା ଏବଂ ଘରୁ ଗୋଟିଏ ଜାଲ ନେଇ ବୁଦ୍ଧିମତୀ ଉପରେ ପକାଇଦେଲା। ସେ ଜାଲରେ କେତୋଟି ଛୋଟ ଛୋଟ ଘଣ୍ଟି ଲାଗିଥାଏ। କିଛି ସମୟପରେ ବୁଦ୍ଧିମତୀର ନିଦ ଭାଙ୍ଗିଲାରୁ ସେ ଧଡ଼ପଡ଼ ହୋଇ ଉଠି ବସିପଡ଼ିବା ବେଳକୁ ଘଣ୍ଟିଗୁଡ଼ାକ ଝୁମୁଝାମ୍ ହୋଇ ବାଜିଉଠିଲା। ଏକେ ତ ସନ୍ଧ୍ୟା ହୋଇ ଆସୁଥାଏ, ଦ୍ୱିତୀୟରେ ଏ ଘଣ୍ଟି-ଶବ୍ଦ ଶୁଣି ବୁଦ୍ଧିମତୀର ବୁଦ୍ଧି ହଜିଗଲା। ସେ ପ୍ରଥମେ କିଛି ବୁଝିପାରିଲା ନାହିଁ। ପରେ ଭାବିଲା, ''ମୁଁ କଣ ମୁଁ ନୁହେଁ କି?'' ଏପରି ଭାବି ସେ

ଉଠି ଠିଆହୋଇ ପଡୁ ପଡୁ ଘଣ୍ଟିଗୁଡ଼ାକ ପୁଣି ଥରେ ବାଜିଉଠିଲା। ବୁଦ୍ଧିମତୀ ଏଥର କହିପକାଇଲା, ''ଏ! ମୁଁ ବୋଧହୁଏ ବୁଦ୍ଧିମତୀ ନୁହେଁ। ମୁଁ ତା'ହେଲେ କିଏ? ସତରେ ମୁଁ କଣ ମୁଁ ନୁହେଁ ନା?'' କିନ୍ତୁ ଅନ୍ଧାରିଆ ବିଲମାଳ ଭିତରେ ଏ ପ୍ରଶ୍ନର ଉତ୍ତର ଭଲା କିଏ ଦିଅନ୍ତା? କିଛି ସମୟ ଏପରି ଭାବି ଭାବି ସେ ଠିକ୍ କଲା, ଘରକୁ ଯାଇ ହ୍ୟାନ୍‌ସକୁ ପଚାରିଦେଲେ ସବୁ ସନ୍ଦେହ ତୁଟିଯିବ। ତେଣୁ ସେ ସିଧା ଘରକୁ ଚାଲିଆସିଲା। ସେତେବେଳକୁ ହ୍ୟାନ୍‌ସ ଭିତରପଟୁ ଘର କବାଟ କିଳି ଭିତରେ ବସି ତା ରନ୍ଧାରନ୍ଧି କରୁଛି। ବୁଦ୍ଧିମତୀ ଦୁଆରେ ଡାକିଲା, ''ହ୍ୟାନ୍‌ସ, ଆହେ ବୁଦ୍ଧିମତୀ ଘରେ ଅଛି?''

ହ୍ୟାନ୍‌ସ ତା କଣ୍ଠ ବାରିପାରି କହିଲା, ''ହଁ, ସେ ଘରେ ଅଛି।''

ଏଥର ବୁଦ୍ଧିମତୀ ବୁଝିଗଲା ଯେ ସେ ସେ ନୁହେଁ। ତେଣୁ ସେ କାହା ଘରର ଘରଣୀ, ସେ କଥା ଜାଣିବା ଲାଗି ଦୁଆର ଦୁଆର ହୋଇ ବୁଲିଲା। କିନ୍ତୁ ଅନ୍ଧାର ରାତିରେ ତାର ଘଣ୍ଟିଘାଗୁଡ଼ି ଶବ୍ଦ ଶୁଣୁଶୁଣୁ ସମସ୍ତେ ଦୁଆର କିଳି ଘରେ ଲୁଚିଲେ। ସେହି ଦିନୁ ବୁଦ୍ଧିମତୀ କେଉଁ ଘରର ନ ହୋଇ କୁଆଡ଼େ ଯେ ପଳାଇଗଲା, ଏ ଯାଏଁ ତାର ପତ୍ତା ମିଳିନି।

—